# ଭାଗବତ କଥା

## ଦଶମ ଖଣ୍ଡ

ଲେଖକ
ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା
ଶ୍ରୀ ଅନନ୍ତ ମିଶ୍ର

ଅନୁବାଦ
ପଣ୍ଡିତ ନୀଳମଣି ମିଶ୍ର

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଦଶମ ଖଣ୍ଡ

ପ୍ରକାଶକ
**ଶ୍ରୀ ଅନନ୍ତ ମିଶ୍ର**
କଟକ ଷ୍ଟୁଡେଣ୍ଟସ ଷ୍ଟୋର
କଟକ-୭୫୩୦୦୨

ପ୍ରଚ୍ଛଦ :
**ଶ୍ରୀ ଅସୀତ ମୁଖାର୍ଜୀ**

ପ୍ରଥମ ସଂସ୍କରଣ
ଡିସେମ୍ବର—୧୯୮୩

ମୁଦ୍ରଣ
ନବରତ୍ନ ପ୍ରିଣ୍ଟର୍ସ
କଟକ

ମୂଲ୍ୟ—ବନ୍ଧାଇ ପନ୍ଦର ଟଙ୍କା
ସାଦା : ବାର ଟଙ୍କା

**BHAGABAT KATHA**

Tenth part

**Sri Prabhudatta Brahmacharee**

Publisher
**Sri Anant Misra**
Cuttack Students' Store
Cuttack-753002

First Edition 1983

Price : Delux Rs. 15/-
Popular Rs. 12/-



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ସୂଚୀ

# ଆତ୍ମକଥା

"ମାସ୍ମିନ୍ ମହାରାଜ କୃଥାଃ ସ୍ମ ଚନ୍ତାଂ
ନିଶାମୟାସ୍ମଦ୍ ବଚ ଆଦୃତାତ୍ମା ।
ଯଦ୍ଧ୍ୟାୟତୋ ଦୈବହତଂ ନୁ କର୍ତୁଂ
ମନୋଽତି ରୁଷ୍ଟଂ ବିଶତେ ତମୋଽନ୍ଧମ୍ ।।"

(ଭାଗବତ ୪ର୍ଥ ସ୍କନ୍ଧ ୧୯ଶ ଅଧ୍ୟାୟ ଓ ୩୪ଶ ଶ୍ଳୋକ)

ଛପ୍ପୟ

"କବ ଅପନୋପନ ତ୍ୟାଗି ପୁକାରୁଁ ପ୍ରଭୁବର ! ତୁମକୂଁ ।
କବ ଅପନାଓ ସଖେ ! ଶିଷ୍ୟ ସେଓ୍ୱକ ଲଖି ହମ କୂଁ ।।
କବ ସବ ତଜି ହରି ଭଜୂଁ ଭୁଲି ସବ ଜଗ କୂଁ ଜାଉଁ ।
କବ ତଜି ଜଗ କୀ ଆଶ ତୁହ୍ମାରୋ ନାଥ କହାଉଁ ।।
କବ ନିରଖୌଁ ବୃନ୍ଦା ବିପିନ କବ ମୁରଲୀ କୀ ଧୁନି ସୁନୂଁ ।
କବ କାଗଦ କୀ କାଲିମା, ଭୁଲି କୃଷ୍ଣ କୋ ଗୁନ ପୁନୂଁ ।।"

ଅର୍ଥାତ୍—ଭଗବାନ୍ ବ୍ରହ୍ମା ମହାରାଜା ପୃଥୁଙ୍କୁ ବୁଝାଇ କହୁଛନ୍ତି—"ହେ ରାଜନ୍, ଆପଣଙ୍କର ଶତ ଶତ ଯଜ୍ଞରେ ଇନ୍ଦ୍ର ବାଧାସୃଷ୍ଟି କରିଥିବାରୁ, ଆପଣ ସେଥିଲାଗି ଚିନ୍ତା କରନ୍ତୁ ନାହିଁ । ମୋ' କଥା ଆପଣମାନଙ୍କୁ ଏବଂ ଯଜ୍ଞର ମୋହ ମନରୁ ତ୍ୟାଗ କରନ୍ତୁ; ଯେଉଁ କାର୍ଯ୍ୟରେ ଦୈବ ନିଜେ ବିଘ୍ନ କରୁଛନ୍ତି, ସେପରି କାର୍ଯ୍ୟରେ ଅଧିକ ମନୋଯୋଗୀ ହେଲେ, ମନରେ କ୍ରୋଧ ଓ ମୋହ ଜାତ ହୋଇଥାଏ ।"

ଶ୍ରୀକୃଷ୍ଣଙ୍କ କଥା ବ୍ୟତୀତ ମୁଁ ଅନ୍ୟ କୌଣସି କଥା କହିବାକୁ ଚାହୁଁ ନଥିଲି; କିନ୍ତୁ ଏବେ ବାଧ୍ୟ ହେଉଛୁ କହିବା ଲାଗି । ମୁଁ ଚୋରି କରିବାକୁ ଚାହୁଁ ନଥିଲି; କିନ୍ତୁ ଚୋରମାନଙ୍କ ଆଚରଣ ଏବଂ ସେମାନଙ୍କ ପ୍ରେରଣା ଫଳରେ ମୁଁ ଚୋରି କରିବାକୁ ବାଧ୍ୟ ହୋଇଛୁ ।

ହେ ପାଠକବୃନ୍ଦ ! ଆପଣମାନେ ମୋତେ ବାଧ୍ୟ କରୁଛନ୍ତି, ତେଣୁ ମୁଁ ଭାଗବତ କଥା ସହିତ ଆତ୍ମକଥା ମଧ୍ୟ ଲେଖିବାକୁ ଯାଉଛୁ । ଆଉ କେତେକ ପାଠକ କହୁଛନ୍ତି—ଭାଗବତ କଥା ସହିତ ଆତ୍ମକଥା ନ ରହିଲେ, ପୁସ୍ତକଟି ସେତେ ରୋଚକ ହେଉନାହିଁ । ମୁଁ ନିଜ କଥା ବଖାଣି ବସିଲେ 'ଭାଗବତ କଥା' ଲେଖି ହେବ ନାହିଁ । ପାଠକମାନେ ମୋତେ ବରାବର ଖରାପ ଭାବୁଛନ୍ତି । ମୁଁ ସେମାନଙ୍କଠାରୁ ଖରାପ କଥା ଶୁଣିବାକୁ ଚାହେଁନାହିଁ; କିନ୍ତୁ ଉପାୟ ନାହିଁ, ବାଧ୍ୟ ହୋଇ ଶୁଣିବାକୁ ପଡ଼ୁଛି ।

ଏଲାହାବାଦର ଗଙ୍ଗାଯମୁନା ସଙ୍ଗମ ସ୍ଥଳରେ ସ୍ନାନ କରିବା ପାଇଁ ଜଣେ ଶେଠ ଆସିଥିଲେ । ସେ ନୌକାରେ ବସି ଯାଉଥିବା ସମୟରେ ନାଉରୀଙ୍କୁ ପଚାରିଲେ—"ତୁମର କେହି ବଡ଼ ଭାଇ ଅଛନ୍ତି ?" ସେ ଦୁଃଖର ସହିତ କହିଲା—"ହଁ, ଆଜ୍ଞା । ମୋର ଭାଇ ଥିଲା; କିନ୍ତୁ ଗଙ୍ଗାରେ ବୁଡ଼ିକରି ମରିଗଲା ।"

"ଆଚ୍ଛା, ତୁମ ବାପା ଅଛନ୍ତି ?" ପଚାରିଲେ ଶେଠ୍‌ଜୀ । "ନା' ଆଜ୍ଞା, ସେ ଗଙ୍ଗା-ନଦୀର ବନ୍ୟାରେ ଭାସିଯାଇ ମରିଗଲେ ।"

"ଆରେ ଭାଇ, ତୁମ କାମଟା ନିହାତି ଖରାପ । ଏ କାମ ଛାଡ଼ିଦିଅ ।"

ନାଉରିଆ ବିଚରା କିଛି ନକହି ନୀରବ ରହିଲା । କିଛି ସମୟ ଯିବା ପରେ, ସେ ଶେଠଙ୍କୁ ପଚାରିଲା—"ଆପଣ ଏଆଡ଼େ କୁଆଡ଼େ ଆସିଛନ୍ତି ?"

"କ'ଣ କହିବି ବାବା, ଗୋଟିଏ ମୋକଦ୍ଦମା ତଦବିର୍ କରିବା ପାଇଁ ଆସିଥିଲି । ଭାଇମାନେ ମୋ' ସହିତ ବିବାଦ କରି ଧନସମ୍ପତ୍ତି ଲୁଟିନେଲେ", କହିଲେ ଶେଠଜୀ ।

"ଆପଣଙ୍କ ପିତା କେଉଁଠି ମରିଥିଲେ ?" ପଚାରିଲା ନାଉରିଆ ।

"ସେ ଦୋକାନ ଘରେ ମରିଥିଲେ ।" କହିଲେ ଶେଠ । ତା' ପରେ କିଛି ସମୟ ପରେ ପୁଣି ନାଉରିଆ ପଚାରିଲା—"ଆପଙ୍କେ ଘରେ ଆଉ କିଏ କିଏ କେଉଁଠି କେଉଁଠି ମରିଛନ୍ତି ?"

ବିଚରା ଶେଠ କାନ୍ଦ କାନ୍ଦ ହୋଇ କହିଲେ—"କ'ଣ କହିବି ଭାଇ, ସାତ ସାତଟା ଭେଣ୍ଡିଆ ପୁଅ ମଲେ । ବଡ଼ ଭାଇ ମଧ୍ୟ ମରିଗଲା । ସମସ୍ତେ ସେହି ଘରେ ମରିଛନ୍ତି ।"

"ସେ ଘର ଓ ଦୋକାନ ଛାଡ଼ିଦେଉ ନାହାନ୍ତି ? କାରଣ ସେଇ ଦୋକାନ ଓ ଘରେ ଆପଙ୍କେର ବାପା, ଭାଇ, ପୁଅ ସମସ୍ତେ ମରିଗଲେଣି" କହିଲା ନାଉରିଆ ।

ଶେଠଙ୍କ ନାଉଡ଼ଆଙ୍କୁ ଦେଇଥିବା ଉପଦେଶ ଏକାଦବେଲକେ ଭୁଲିଯାଇ କହିଲେ—
"ଯେ ଘର ଗୁଡ଼ିଲେ ଚଳିବ କପରି ? ଘରକୁ ଲାଗି ଦୋକାନ ଘର । ଗୁଡ଼ିଦେଲେ ବଞ୍ଚିବୁ କପରି ?"

ମଣିଷ ଅନେକ ପରିସ୍ଥିତକୁ ବାଧ ହୋଇ ମାନଯାଏ । ନିଜ ଇଚ୍ଛା ବରୁଦ୍ଧରେ କାମ କରି ଚାଲେ । ତେଣୁ ଅନ୍ୟଙ୍କୁ ସମାଲୋଚନା କରିବା ଉଚିତ ନୁହେଁ ।

ମୁଁ ଅନେକ ପ୍ରସିଦ୍ଧ ସାଧୁଙ୍କୁ ଦେଖିଛୁ, ସେମାନେ ଅନ୍ୟ ସାଧୁସନ୍ଥଙ୍କ ନିନ୍ଦାମୂଳକ ଆଲୋଚନା ଶୁଣି ବେଶ୍ ଖୁସି ହୁଅନ୍ତି ।

ଅନ୍ୟମାନଙ୍କ କଥା କହିବ କ'ଣ ? ମୋ' ପାଖରେ ଯଦ କେହି ଆସି କହେ—"ଆଜ୍ଞା ଅମୁକେଇ ସାଧୁ ଜଣକ ପାଖକୁ ଗଲି ଯେ, ସେ ବଡ଼ ଧପ୍‌ପାବାଜ; କନ୍ତୁ ଆପଣଙ୍କ ପରି ଜଣେ ଉନ୍ନତ ସାଧୁ ମୁଁ ଆଉ କେଉଁଠି ଦେଖିନାହିଁ ।" ଏହି କଥା ପଦକ ଶୁଣିବାମାତ୍ରେ ମୋ' ଗୁଡ ଫୁଲିଉଠେ । ସତେ ଅବା ସ୍ୱର୍ଗ ଆଉ ସାତଆଙ୍ଗୁଳି ରହିଲା ?"

ମୁଁ ବେଶ୍ ଜାଣେ, ସେ ଲୋକଟି ମୋତେ ତୋଷାମଦ କରି କିଛି ଗୋଟିଏ କାମ ହାସଲ କରିବାକୁ ଆସିଛୁ; ତଥାପି ମୁଁ ସେ ଲୋକଟିକୁ ଶ୍ରଦ୍ଧା କରେ ।

ମୋର କେତେକ ହିତୈଷୀ ବନ୍ଧୁ କହନ୍ତି—"ଆରେ ଭାଇ, କାହିଁକି ଏ ଝଞ୍ଜଟରେ ପଡ଼ିଲ ? ଆଗରୁ ତ ବେଶ୍ ଜପ, ତପ, ଯୋଗ ଓ ଧ୍ୟାନରେ କାଳ ବତାଉଥିଲ, ଏବେ ନାନା ଅସୁବିଧାରେ ପଡ଼ିଛ ।"

ମୁଁ ବେଶ୍ ଜାଣିପାରୁଛୁ ଯେ, ମୁଁ ନାନା ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଛୁ । ପୂର୍ବରୁ ଆପଣମାନେ, ମୂଷା ମାରିବାକୁ ଯାଇ, ବାବାଜୀଙ୍କ ଅବସ୍ଥା ସମ୍ପର୍କରେ, ପଢ଼ିଛନ୍ତି । ମୁଁ ସେହିପରି ଭାବରେ ଏହି ଗୋଲକ ଧନ୍ଦାରେ ପଡ଼ିଛୁ । ଅବଶ୍ୟ ଏ' ଧନ୍ଦାରୁ ମୁଁ ଯେ କୌଣସି ମୁହୂର୍ତ୍ତରେ ମୁକ୍ତ ହୋଇ ପାରିବ; ଏ' ବିଶ୍ୱାସ ମୋର ରହିଛୁ । ଏହାହିଁ ହେଉଛୁ ମୋର ଭୂମିକା ।

ଆଜି ଆପଣମାନଙ୍କଠାରୁ ପାଇଥିବା କେତେ ଖଣ୍ଡି ପତ୍ରର ଉତ୍ତର ଦେଉଛୁ ।

ଜଣେ ପାଠକ ଲେଖିଛନ୍ତି—"ଠିକ୍ ସମୟରେ ଭାଗବତ କଥାର ପରବର୍ତ୍ତୀ ଖଣ୍ଡ ପ୍ରକାଶ ପାଉନାହିଁ କାହିଁକି ?"

"ବନ୍ଧୁ, ଆପଣଙ୍କୁ ମୁଁ ଅନେକ ଆଗରୁ ଜଣାଇ ଦେଇଛୁ ଯେ, କାଗଜ ଅସୁବିଧା ପାଇଁ ବହି ଠିକ୍ ସମୟରେ ପ୍ରକାଶ ପାଇପାରୁ ନାହିଁ । ମୁଁ ଚେଉଶ ଖଣ୍ଡ ପାଣ୍ଡୁଲିପି ପ୍ରସ୍ତୁତ କରି ରଖିଛୁ । କାଗଜ ମିଳିଗଲେ, ପ୍ରତି ମାସରେ ଦୁଇ ତିନ ଖଣ୍ଡ ବହି ପ୍ରକାଶ ପାଇପାରିବ ।

ଅନ୍ୟ ଜଣେ ପାଠକ ବନ୍ଧୁ ଲେଖିଛନ୍ତି—"ଆପଣ ଆମକୁ ଗିଲାସେ ସ୍ୱାଦିଷ୍ଟ ସରବତ୍ ଦେଇ, ଏକାବେଳକେ ନ ପିଇ, ଧୀରେ ଧୀରେ ଏକମାସ ମଧ୍ୟରେ ପିଇବାକୁ ଉପଦେଶ ଦେଉଛନ୍ତି, ଏହା ସମ୍ଭବ ହେବ କିପରି ?"

"ପାଠକ ମହୋଦୟ, ଆପଣଙ୍କୁ ଯଦି, ଖଣ୍ଡିଏ ମାତ୍ର ଗୁଡ଼ ଦିଆଯାଇ କୁହାଯିବ ଯେ ପୋଖରୀଯାକର ପାଣିକୁ ମିଠା କରିଦିଅନ୍ତୁ; ଆପଣ ତାହା କରିପାରିବେ କି ? ମୋ' କାମ ଠିକ୍ ସେହିପରି । ମୁଁ ଗୋଟିଏ ବିରାଟ ଯୋଜନା ହାତକୁ ନେଇଛି; କିନ୍ତୁ ମୋ' ନିକଟରେ କିଛି ହେଲେ ସମ୍ବଳ ନାହିଁ । ସେଥିରେ ଶୀଘ୍ର କାର୍ଯ୍ୟ ସମ୍ପାଦନ ହୋଇ ପାରିବ କିପରି ? ଏହାର ସଫଳତା ଈଶ୍ୱରଙ୍କ ଉପରେ ନିର୍ଭର କରେ । ମୁଁ କ'ଣ କରିପାରିବି ?

କେତେଜଣ ବୃଦ୍ଧ ଓ ବୃଦ୍ଧା ଲେଖିଛନ୍ତି—"ମହାଶୟ, ଶୀଘ୍ର ଶୀଘ୍ର ଭାଗବତ କଥା ଶେଷ କରିଦିଅନ୍ତୁ । ହୁଏତ ଆମେ ଏହି ଜୀବଦ୍ଦଶା ମଧ୍ୟରେ ସମ୍ପୂର୍ଣ୍ଣ ପାଠ କରି ଜୀବନର ଅବଶୋଷ ମେଣ୍ଟାଇ ନେବୁ ।"

"ଆପଣମାନଙ୍କ ଆୟୁ କେତେ ସେ ବିଷୟରେ ନିଶ୍ଚିତ ଭାବରେ ଜଣାଥିଲେ ଅବା କିଛି କରିଯାଇ ପାରନ୍ତା ! କାହାର ମୃତ୍ୟୁ ସମୟ କେତେବେଳେ ଆସି ଉପସ୍ଥିତ ହୋଇଯିବ, କିଏ କହି ପାରିବ ? ମୃତ୍ୟୁର କରାଳ ହସ୍ତ କେଉଁଠି, କିପରି ଭାବରେ ଓ କାହା ଉପରେ ଆସି କେତେବେଳେ ପଡ଼ିବ, ତାହା ମଣିଷ ଜାଣେ ନାହିଁ । ଭାଗବତ କଥା ଅନନ୍ତ; ଯେତିକ ଆପଣଙ୍କ ଭାଗ୍ୟରେ ଅଛି, ଆପଣ ସେତିକି ପଢ଼ି ପାରିବେ । ଭାଗବତ କଥାର ପ୍ରତ୍ୟେକ ଖଣ୍ଡ ସ୍ୱତନ୍ତ୍ର । ଆପଣ ନିଜ ଜୀବଦ୍ଦଶା ମଧ୍ୟରେ ଯେତିକି ପଢ଼ି ପାରିବେ ସେତିକି ଯଥେଷ୍ଟ ।"

କେତେକ ବନ୍ଧୁ ଲେଖିଛନ୍ତି—"ଆପଣ ଅତି ସୁନ୍ଦର ସୁନ୍ଦର ଉଦାହରଣାତ୍ମକ ଆଖ୍ୟାୟିକା ଗୁଡ଼ିଏ ଲେଖୁଛନ୍ତି, କିନ୍ତୁ ସେଗୁଡ଼ିକ କେଉଁ କେଉଁ ପୁରାଣରୁ ସଂଗ୍ରହ କରିଯାଇଛି, ସେ ବିଷୟରେ କିଛି ହେଲେ ନିର୍ଦ୍ଦେଶ ଦେଉନାହାନ୍ତି ।"

"ବନ୍ଧୁ, ସୂତମହର୍ଷି କଥା ଛଳରେ ବହୁ ପୁରାଣରୁ ଆଖ୍ୟାୟିକା ସଂଗ୍ରହ କରି ନୈମିଷାରଣ୍ୟର ମୁନିମାନଙ୍କୁ ଶୁଣାଇଛନ୍ତି । ଏହି ଆଖ୍ୟାୟିକାଗୁଡ଼ିକ ପ୍ରାଚୀନ ତଥା ପ୍ରସିଦ୍ଧ ଆଖ୍ୟାୟିକା, ଏତିକି ଜାଣିଲେ ପର୍ଯ୍ୟାପ୍ତ ହେବ ।"

ଆଉ କେତେକ ସଜ୍ଜନ ଲେଖିଛନ୍ତି—"ଭାଗବତ କଥା ପାଠ କରିବା ସମୟରେ, ଅନେକ ସନ୍ଦେହ ମନରେ ଜାତ ହେଉଛି । ଦୟାକରି ଆପଣ ସେଗୁଡ଼ିକର ସମାଧାନ 'କଥା'ରେ ରହିବା ଆବଶ୍ୟକ ।"

ପ୍ରତ୍ୟେକ କଥାରେ ସନ୍ଦେହ ରହିବା ସ୍ୱାଭାବିକ । ଏହାର ସମାଧାନ ଲାଗି 'ଭାଗବତ ଦର୍ଶନ' ଶୀର୍ଷକ ଆଉ ଖଣ୍ଡିଏ ବହି ଲେଖାଯାଉଛି । ଏହି 'ଭାଗବତ କଥା' ଶେଷରେ ପ୍ରକାଶ ପାଇବ । ଉଦାହରଣ ସ୍ୱରୂପ—ଜଣେ ରାଜା ଅଶ୍ୱମେଧ ଯଜ୍ଞ କଲା । ଏହା ଠିକ୍ କି ନାହିଁ, ତାହା ଦାର୍ଶନିକ ବିଷୟ । ତାହା ସେହି କଥା ସହିତ ସମ୍ପର୍କ । ତା'ପରେ ମୁଁ ଯାହା ଶୁଣିଛି, ତାହାହିଁ ଏହି କଥାରେ ଲେଖୁଛି ।

ଆଉ କେତେକ ବନ୍ଧୁ ଲେଖୁଛନ୍ତି--"ଆପଣ ଲେଖିଛନ୍ତି—କୃଷ୍ଣକଥାରେ ପାପ ଦୂର ହେଉଛି । ବାସୁଦେବ ଭକ୍ତି ହିଁ ସଂସାରରେ ଏକମାତ୍ର ସାର । ଏପରି ସାମ୍ପ୍ରଦାୟିକ ତତ୍ତ୍ୱ ଆପଣ ପରିବେଷଣ କରୁଛନ୍ତି କାହିଁକି ? ରାମ ଓ ଶିବଙ୍କ ଭକ୍ତିରେ ସାରବତ୍ତା କ'ଣ ନାହିଁ ?"

"ମୋର ଧାରଣା ରାମ, ଶିବ, କୃଷ୍ଣ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କୃଷ୍ଣଭକ୍ତି କହିଲେ, ସେଥି ମଧ୍ୟରେ ସମସ୍ତ ଭକ୍ତିର ସାରବତ୍ତା ରହିଛି । ସମସ୍ତ ନାମ ଗୋଟିଏ ପର୍ଯ୍ୟାୟ ବାଚୀ । ମୋ' ବିଚାରରେ ଏହା ଧାର୍ମିକ ଉଦାରତା, ଏଥିରେ ସାମ୍ପ୍ରଦାୟିକତାର ଗନ୍ଧ ନାହିଁ ।"

ଆଉ କେତେଜଣ ବନ୍ଧୁଙ୍କଠାରୁ ପତ୍ର ମିଳିଛି—'ଭାଗବତ କଥା'ର ମୂଲ୍ୟ ଅଧିକ ।

ସେମାନଙ୍କୁ ମୋର ନିବେଦନ—ଲେଖିବା ଦାୟିତ୍ୱ ମୋର । ମୂଲ୍ୟ କେତେ ହେବ, ସେ ଦାୟିତ୍ୱ ପ୍ରକାଶକଙ୍କର । ମୋ' କଥାର ମୂଲ୍ୟ କେହି ଦେଇ ପାରିବେ ନାହିଁ । ଉପନ୍ୟାସ, ନାଟକ ଆଦି ପୁସ୍ତକର ମୂଲ୍ୟ ପ୍ରତି ଆପଣମାନେ କେବେହେଲେ ଦୃଷ୍ଟି ଦେଇଛନ୍ତି କି ? ଭାଗବତ କଥାର ମୂଲ୍ୟ କେହି ଦେଇ ପାରିବେ ନାହିଁ ।

ବନ୍ଧୁମାନେ ଯେପରି ପୁସ୍ତକ ମୋ'ଠାରୁ ଆଶା କରୁଛନ୍ତି, ସେହିଭଳି ପୁସ୍ତକ ଏଠାରୁ ପ୍ରକାଶ ପାଉଛି । ମୁଁ ଆଉ ସେ ପୂର୍ବର ବ୍ରହ୍ମଚାରୀ ନୁହେଁ । ଏବେ ମୁଁ ବ୍ୟବସାୟୀ ହୋଇ ଯାଇଛି । ଏ'ପୁସ୍ତକ ଲେଖିବା ସମୟରେ ମୋ' ମନରେ ଗୋଟିଏ ଧାରଣା ସ୍ପଷ୍ଟ ଭାବରେ ଖେଳି ଯାଉଛି, ଏଥିରେ ଲାଭ ହେବ କି ନାହିଁ, ଏହା ଫଳରେ ଆଶ୍ରମ ପାଇଁ କେତେ ସାହାଯ୍ୟ ମିଳିବ ?

'ଯସ୍ତୁ ଆଶିଷ ଆଶାସ୍ତେ ନ ସ ଭୃତ୍ୟଃ ସ ବୈ ବଣିକ ।'

ଆଉ କେତେକ ଆଗ୍ରହୀ ପାଠକ ବିଶେଷ କିଛି ସ୍ପଷ୍ଟ ଭାବରେ ନ ଲେଖି, କେବଳ ଲେଖୁଛନ୍ତି, ଏହା ଦ୍ୱାଦଶ ଖଣ୍ଡ ସୁଦ୍ଧା ଏ'ବର୍ଷ ପ୍ରକାଶ ପାଇବ ବା ନାହିଁ ? ନଇଲେ ଆମ ପଇସା ବ୍ୟର୍ଥ ହୋଇଯିବ ।

ମୁଁ ସେମାନଙ୍କୁ କହିଦେବାକୁ ଚାହେଁ, ଏହା ପ୍ରକାଶାଧୀନ ରହିଛି । ବିଶେଷତଃ ମୋ' ଦୃଷ୍ଟିରେ ପଇସା ତୁଳନାରେ 'ଭାଗବତ କଥା'ର ମହତ୍ତ୍ୱ ଅଧିକ । ତଥାପି 'ଭାଗବତ କଥା'ର ପ୍ରଚାର ପାଇଁ ମୁଁ ପଇସା ଚାହୁଁଛି । ମୁଁ ଶୀଘ୍ର ପୁସ୍ତକଗୁଡ଼ିକର ପ୍ରକାଶନ ଲାଗି ଚେଷ୍ଟା କରୁଛି । ଯଦି ନିହାତି ଅସୁବିଧା ହୁଏ, ମୋର ଉପାୟ ନାହିଁ । ଲୋକମାନଙ୍କ ଘରୁ ଲକ୍ଷ ଲକ୍ଷ ତଥା କୋଟି କୋଟି ଟଙ୍କା ଚୋରି, ଡକାୟତି ହୋଇ ଯାଉଛି । ଦୈବଗତି ଆଗରେ କାହାରି କିଛି ଆୟତ୍ତ ନାହିଁ ।

ଆପଣମାନେ ମନରେ ସଂକୀର୍ଣ୍ଣ ବିଚାରକୁ ସ୍ଥାନ ଦେଇ ଏପରି ଭୟ କରୁଛନ୍ତି କାହିଁକି ? ଭାଗବତ କଥା ପାଠରେ କ୍ଷତି ଆଦୌ ନାହିଁ । ସର୍ବଦା ଲାଭହିଁ ଲାଭ ହେଉଛି ।

"ଗଙ୍ଗାରେ ସ୍ନାନ ଆଉ ବିପ୍ରରେ ଦାନ ।
ବୁଡ଼ିଲେ ମୁକ୍ତି ତଥା ଉଠିଲେ ପୁଣ୍ୟ ।।"

କେତେକ ବନ୍ଧୁ ଅତି କରୁଣ ଭାଷାରେ ଲେଖିଛନ୍ତି—"ମହାଶୟ, ଭାଗବତ କଥା ପାଠ କରିବା ସମୟରେ ଆମ ଆଖିରୁ ଅବିରଳ ଅଶ୍ରୁଧାରା ବହିବାକୁ ଲାଗୁଛି । ଆପଣ ଅନ୍ୟଖଣ୍ଡ ପଠାଇବା ବେଳକୁ ସେ ଅଶ୍ରୁ ଆମ ଆଖିରୁ ଶୁଖି ଯାଉଛି । ଆମର ନିବେଦନ—ଆମ ଆଖିରୁ ଅଶ୍ରୁ ଶୁଖିବା ପୂର୍ବରୁ ଆପଣ ପରବର୍ତ୍ତୀ ଖଣ୍ଡମାନ ପଠାଇ ଦିଅନ୍ତୁ ।"

ଏ ଧରଣର ପାଠକମାନଙ୍କ ଶ୍ରୀଚରଣରେ ନିବେଦନ, ସେମାନେ ମୋତେ ମଧ୍ୟ ଆଶିଷ ଦିଅନ୍ତୁ । ମୋର ବଜ୍ରଠାରୁ କଠିନ ହୃଦୟ ଦ୍ରବୀଭୂତ ହୋଇ ସେମାନଙ୍କ ପରି, ମୋ ଚକ୍ଷୁରୁ ମଧ୍ୟ ଅବିରଳ ପ୍ରେମାଶ୍ରୁ ନିର୍ଗତ ହେଉ ! 'ଦୀପ ତଳ ଅନ୍ଧାର' । ବୈଦ୍ୟଶାସ୍ତ୍ର ପଢ଼ିଥିବା କବିରାଜମାନେ ରୋଗରେ ପଡ଼ନ୍ତି । ବେଦାନ୍ତ ଶାସ୍ତ୍ରର ଅଧ୍ୟାପକମାନେ କୃପଣ ଓ ଧନଲୋଭୀ ହୋଇଥିବାର ପ୍ରାୟ ଦେଖାଯାଏ । ପୁସ୍ତକ ପ୍ରକାଶ କରୁଥିବା ବ୍ୟବସାୟୀମାନେ କ୍ୱଚିତ୍ ଅଧ୍ୟୟନ କରିବାର ବାସନା ପୋଷଣ କରନ୍ତି । ଏହିପରି ଭାବରେ ମୋ ହୃଦୟରେ ସେମାନଙ୍କ ପରି ଅନୁରାଗ ଜାତ ହେଉନାହିଁ । ଏପରି ହୋଇ ପାରିଲେ, ସମସ୍ତ ଦୁର୍ଦ୍ଦଶାରୁ ମୁଁ ମୁକ୍ତି ପାଇପାରନ୍ତି । ଆପଣମାନେ ମୋତେ ଆଶୀର୍ବାଦ ପ୍ରଦାନ କରନ୍ତୁ ଏବଂ ଏହି ଗ୍ରନ୍ଥର ଅନ୍ୟାନ୍ୟ ଖଣ୍ଡଗୁଡ଼ିକ ଶୀଘ୍ର ପ୍ରକାଶ ପାଇଯାଉ ! ଆଜି ଏତିକି ।

ନମସ୍କାର ! ଶ୍ରୀକୃଷ୍ଣାର୍ପଣମସ୍ତୁ !!

ସଙ୍କୀର୍ତ୍ତନ ଭବନ, ଝୁସୀ
ଆଶ୍ୱିନ ଦୁର୍ଗାଷ୍ଟମୀ—୨୦୦୪ ବି. ସଂ.

ପ୍ରଭୁଦତ୍ତ ବ୍ରହ୍ମଚାରୀ

# ଦକ୍ଷଯଜ୍ଞ ଓ ସତୀଙ୍କ ଦେହତ୍ୟାଗ

"ତତଃ ସ୍ୱଭର୍ତୁଶ୍ଚରଣାମ୍ବୁଜାସବଂ
ଜଗଦ୍ ଗୁରୋଶ୍ଚିନ୍ତୟତୀ ନ ଚାପରମ୍ ।
ଦଦର୍ଶ ଦେହୋ ହତକଲ୍ମଷା ସତୀ
ସଦ୍ୟଃ ପ୍ରଜଜ୍ୱାଲ ସମାଧିଜାଗ୍ନିନା ॥"

(ଭାଗବତ ୪।୪।୨୭)

ଛପ୍ପୟ

"ଧରମହୀନ ଜୋ କୁଟିଲ କରୈ ନିନ୍ଦା ହରିହର କୀ ।
ଗରମ ସଡ଼ାସୀ ପକରି ଜୀଭ ଖେଂଚେଁ ଓ୍ୱା ନର କୀ ॥
ନାହିଁ ତୁ ମୂଦେଁ କାନ ଜପୈ ଶତନାମ ରାମକେ ।
ହରିହର ଦ୍ୱେଷୀ ସଗେ ବନ୍ଧୁ ହୂ ନାହିଁ କାମ କେ ॥
ତାତୈଂ ଉପଜୀ ଦେହ ଜିହ, ଶିବ ଉପଯୋଗୀ ଇହୀ ନହିଁ ।
କୈସେ ଭିଁ ଟେହ୍ରି ଦ୍ୱୈଂ କରୁଁ, ଶିବ ହର ଦାକ୍ଷାୟଣି କହହିଁ ॥"

ଅର୍ଥାତ୍—ମୈତ୍ରେୟ କହୁଛନ୍ତି—"ହେ ବିଦୁର, ଅନେକ କିଛି କହିବା ପରେ, ଜଗଦ୍‌ଗୁରୁ ଭଗବାନ୍ ଶିବଙ୍କ ଚରଣାରବିନ୍ଦ ମକରନ୍ଦକୁ ମନେ ମନେ ଚିନ୍ତାକରି, ମହାସତୀ ସବୁଦିଗରୁ ମନକୁ ସଙ୍କୁଚିତ କରି ଆଣିଲେ । ଶିବଙ୍କ ଧ୍ୟାନ ଫଳରେ ତାଙ୍କର ସମସ୍ତ କଳୁଷ ନାଶ ହୋଇଗଲା । ଏହାପରେ ସର୍ବେରେ ନିଷ୍ପାପ ସତୀଙ୍କ ଶରୀରରୁ ଯୋଗାଗ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସେହି ଯୋଗାଗ୍ନିରେ ସେ ଭସ୍ମ ହୋଇଗଲେ ।"

ଭଗବାନ୍‌ଙ୍କ ଶ୍ରୀଚରଣରେ ଶ୍ରଦ୍ଧା ଜାତ ହେବା ଏବଂ ସେହି ପ୍ରେମରେ ଆତ୍ମାହୁତି ଦେଲେ ଅମରତ୍ୱ ଲାଭ ହୋଇଥାଏ । ଚନ୍ଦନକୁ ଯେପରି ଭାବରେ ବ୍ୟବହାର କଲେ ମଧ୍ୟ ସେଥିରୁ ସୁଗନ୍ଧ ଜାତ ହୋଇଥାଏ । ସେହିପରି ଭାବରେ, ପରମେଶ୍ୱରଙ୍କ ସହିତ ସମ୍ବନ୍ଧ ହୋଇଗଲେ, ସମସ୍ତ ଅବଗୁଣ ସୁଗୁଣରେ ପରିଣତ ହୋଇଯାଏ । କ୍ରୋଧ ପ୍ରକାଶ କରିବା ଏବଂ ଆତ୍ମହତ୍ୟା କରିବା ପାପ; କିନ୍ତୁ ତାହା ଶିବଙ୍କ ଉଦ୍ଦେଶ୍ୟରେ କରାଗଲେ, ପୁଣ୍ୟକାର୍ଯ୍ୟରେ ପରିଣତ ହୋଇଥାଏ । ଗୋପୀମାନଙ୍କ ହୃଦୟରେ ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମ ଜାତ ହୋଇଥିଲା । ସେଥିସହିତ ସେମାନଙ୍କ ମନରେ କାମବାସନା ଉଦ୍ରେକ ହୋଇଥିଲେ ମଧ୍ୟ ତାହା ଶ୍ଳାଘନୀୟ ହୋଇଥିଲା । କଂସ, ଜରାସନ୍ଧ ଆଦି ଦୈତ୍ୟମାନେ ଶତ୍ରୁଭାବାପନ୍ନ ହୋଇ ମଧ୍ୟ ପ୍ରତିକ୍ଷଣ ଶ୍ରୀକୃଷ୍ଣଙ୍କ ନାମ ସଂକୀର୍ତ୍ତନ କରୁଥିଲେ । ତେଣୁ ସେମାନେ ଅସୁର ହୋଇ ମଧ୍ୟ ପରମପଦ ଲାଭ କରିଥିଲେ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର, ସତୀ ଯଜ୍ଞସ୍ଥଳରେ ଉପସ୍ଥିତ ଶିବଙ୍କର ଗୁଣଗାନ କରିବାକୁ ଲାଗିଲେ । କିନ୍ତୁ ଦକ୍ଷ ଔଦ୍ଧତ୍ୟ ପ୍ରକାଶ କରି ତାହା ଶୁଣିଲେ ନାହିଁ । ତେଣୁ ସତୀ ସେହିଠାରେ ଶିବଙ୍କ ନାମରେ ଆତ୍ମାହୁତି ଦେବାଲାଗି ମନେ ମନେ ସଂକଳ୍ପ କରିଥିଲେ । ସେ ପିତାଙ୍କୁ ଚେତାବନୀ ଶୁଣାଇ କହିଲେ—"ପିତା, ଆପଣଙ୍କ ମୁଣ୍ଡରେ ପାପ ରୂପକ ଭୂତ ଆବେଶ ହୋଇଛି । ତେଣୁ ଆପଣ ଶିବଦ୍ରୋହୀ ହୋଇ ଉଠିଛନ୍ତି । ଶିବଦ୍ରୋହୀଙ୍କ ସହିତ ସମ୍ବନ୍ଧ ରଖିବା ତ ଦୂରର କଥା, ସେମାନଙ୍କ ସହିତ ଆଳାପ କରିବା ମଧ୍ୟ ପାପ । ଆପଣଙ୍କ ଶରୀରରୁ ମୋର ଏହି ଶରୀର ଉତ୍ପନ୍ନ ହୋଇଛି । ଏ ଶରୀର ଶିବଙ୍କ ଯୋଗ୍ୟ ନୁହେଁ । ସେ ଆପଣଙ୍କୁ ନ ଜାଣି, ଆପଣଙ୍କ ଶରୀରରୁ ଜାତ ମୋତେ କୃପାପରବଶ ହୋଇ ଗ୍ରହଣ କରିଥିଲେ । ସେ ଦୟାଳୁ, ଅନ୍ୟର ଦୋଷ ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ବିଷମିଶ୍ରିତ ଖାଦ୍ୟ ଖାଇବା ପରେ ଯେପରି ମଣିଷ ବାନ୍ତି କରିଦେଇ ସେହି ଦୂଷିତ ଅନ୍ନକୁ ତ୍ୟାଗ କରିଦିଏ, ଶରୀରର ମଳମୂତ୍ରକୁ ତ୍ୟାଗ କରି ମଣିଷ ଯେପରି ବିଶୁଦ୍ଧ ହୋଇଥାଏ ଏବଂ ଶରୀରର ଦୂଷିତ ଅଙ୍ଗକୁ ପରିଷ୍କାର କରି ଯେପରି ଦେହଧାରୀମାନେ ସୁସ୍ଥ ହୋଇ ରହନ୍ତି, ଠିକ୍ ସେହିପରି, ମୁଁ ଏହି ଦୂଷିତ ଅଙ୍ଗକୁ ଅଗ୍ନିରେ ଦଗ୍ଧ କରି ପରଜନ୍ମରେ ଶିବଙ୍କୁ ସେବା କରିବାର ଅଧିକାର ଲାଭକରିବି ।

ସେ ଅନ୍ତର୍ଯ୍ୟାମୀ ପ୍ରଭୁ, ମୋ ଅନ୍ତରର ଭାବନା ବେଶ୍ ଜାଣନ୍ତି । ଛାୟା ଯେପରି ଶରୀରରୁ ପୃଥକ୍ ହୋଇପାରେ ନାହିଁ, ସୁଗନ୍ଧ ଯେପରି ପୃଥିବୀକୁ ତ୍ୟାଗ କରିପାରେ ନାହିଁ, ଜଳ ଯେପରି ଶୀତଳତା ପରିତ୍ୟାଗ କରେ ନାହିଁ ଏବଂ ଅଗ୍ନି ଯେପରି ନିଜର ଦାହକ ଗୁଣ ଛାଡ଼ିପାରେ ନାହିଁ, ମୁଁ ଠିକ୍ ସେହିପରି ଶିବଙ୍କୁ ଛାଡ଼ିପାରିବି ନାହିଁ । ସେ ମୋର ସର୍ବସ୍ୱ, ପ୍ରାଣେଶ୍ୱର ଏବଂ ଜୀବନାଧାର ଅଟନ୍ତି । ତଥାପି ଆପଣଙ୍କ ସଂସର୍ଗରୁ ଜାତ ଏହି ଅଶୁଚି ଶରୀର ଶିବଙ୍କ ଯୋଗ୍ୟ ନୁହେଁ । ମୁଁ ଆଉ ଏହି ଶରୀରକୁ ଧାରଣ କରିବି ନାହିଁ । ଆପଣଙ୍କ ସମ୍ମୁଖରେ ଏହାକୁ ଭସ୍ମ କରିଦେବି ।"

ଏହା ଶୁଣି ଦକ୍ଷ ଭାବିଲେ—ସତୀ ମୋତେ ଧମକ ଦେଉଛି । ଶରୀରକୁ ଭସ୍ମ କରିଦେବା ଆଦୌ ସହଜ କଥା ନୁହେଁ । ତଥାପି ଯଦି ସେ ଆତ୍ମହତ୍ୟା କରେ, ମୋର କ୍ଷତି କ'ଣ ହେବ ? ମୋ ଦୃଷ୍ଟିରେ ସତୀର ମୃତ୍ୟୁ ହୋଇଯାଇଛି । ତା'ର ବଞ୍ଚିବା ଓ ମରିବାରେ ମୋର କିଛି ଯାଏ ଆସେ ନାହିଁ । ଏହା ଚିନ୍ତାକରି ସେ କ୍ରୋଧ ପ୍ରକାଶ କରି କହିଲେ—"ତୋ' ସହିତ ମୋର କୌଣସି ସମ୍ବନ୍ଧ ନାହିଁ । ତୁ ମରିଯାଇ ପାରୁ କିମ୍ବା ଘରକୁ ଫେରି ଯାଇପାରୁ । ତୁ ମୋ' ଶରୀରରୁ ଜାତ ହୋଇଛୁ ସତ୍ୟ; କିନ୍ତୁ ଅଘୋର ଶିବର ସମ୍ପର୍କରେ ଆସିଥିବାରୁ ତୁ ମୋତେ ସ୍ପର୍ଶ କରିବାର ଯୋଗ୍ୟା ନୋହୁ ।"

ସତୀ କ୍ରୋଧରେ ପ୍ରଜ୍ଜ୍ୱଳିତା ହୋଇ କହିଲେ—"ପିତା, ଆଉ ଅଧିକ ପାପ ପଥରେ ଅଗ୍ରସର ହୁଅନ୍ତୁ ନାହିଁ । ସାଧାରଣ ଲୋକଙ୍କ ସହିତ ଶିବଙ୍କୁ ତୁଳନା କରନ୍ତୁନାହିଁ । ତାଙ୍କ ପକ୍ଷରେ କୌଣସି ବିଧି ନିଷେଧ ନାହିଁ । ସାଧାରଣ ଲୋକଙ୍କୁ ମଧ୍ୟ ନିନ୍ଦା କରିବାର ଅଧିକାର ଆମର ନାହିଁ । ଶିବ ହେଉଛନ୍ତି ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନ । ସଂସାରରେ ପ୍ରବୃତ୍ତି ଓ ନିବୃତ୍ତି ଦୁଇ ପ୍ରକାର ମାର୍ଗ ରହିଛି । ଶିବ ଏହି ଦୁଇ ପ୍ରକାର ମାର୍ଗର ବାହାରେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ସମ୍ପନ୍ନ ଦେବ । କୌଣସି ବିଧି ନିଷେଧ କିମ୍ବା ମାର୍ଗ ତାଙ୍କୁ ନିୟନ୍ତ୍ରଣ କରି ପାରିବ ନାହିଁ । ଆପଣଙ୍କ ଦୃଷ୍ଟି ଯଜ୍ଞଧୂମ କାଳିମାରେ ଦୂଷିତ ହୋଇ ଯାଇଛି ଏବଂ ଅନ୍ତଃକରଣ ମଧ୍ୟ ବିକୃତ ଚିନ୍ତାରେ ମଳିନ ହୋଇ ଯାଇଛି । ଆପଣ ଶିବଙ୍କ ମହିମା ଆଦୌ ହୃଦୟଙ୍ଗମ କରିପାରିବେ ନାହିଁ; ତେଣୁ ଦ୍ୱେଷ ବଶରୁ ଶିବଙ୍କୁ ନିନ୍ଦା କରୁଛନ୍ତି । ଆପଣ କେବେହେଲେ ଶିବଙ୍କ ପଦବୀ ଲାଭ କରିପାରିବେ ନାହିଁ ।"

ଦକ୍ଷ ଆହୁରି କ୍ରୋଧ ପ୍ରକାଶ କରି କହିଲେ—"ଶିବର ପଦବୀ ତା'ରି ପାଖରେ ଥାଉ । ମୋର ସେ ପଦବୀ ଲୋଡ଼ା ନାହିଁ । ତା' ନିକଟରେ ଖଣ୍ଡିଏ ବସ୍ତ୍ର ନାହିଁ, ସେ ନିର୍ଲଜ୍ଜ ଦିଗମ୍ବର ସାଜି ବୁଲୁଛି । ଭିକ୍ଷା ମାଗି ପେଟ ନ ପୂରିବାରୁ ସେ ଧାତୁରା ଫଳଗୁଡ଼ିଏ ଖାଇ ପେଟ ପାଳୁଛି । ଏଭଳି ଏକ ବ୍ୟକ୍ତିର ପଦବୀ ମୋ' ଶତ୍ରୁକୁ ମଧ୍ୟ ପ୍ରାପ୍ତ ନହେଉ ।"

ସତୀ ପୁଣି କ୍ରୋଧ ପ୍ରକାଶ କରି କହିଲେ—"ସ୍ୱାହା, ସ୍ୱାହା କରିଦେଲେ ସବୁ କିଛି ହୋଇଗଲା ବୋଲି ଆପଣଙ୍କର ଧାରଣା । ଏଠାରେ ଉପସ୍ଥିତ ବ୍ୟକ୍ତିମାନେ ଆପଣଙ୍କ ଅନ୍ନରେ ପୁଷ୍ଟ ହୋଇ, ପ୍ରଶଂସା ଗାନ କରିବାରେ ଲାଗିଛନ୍ତି । ଆମର ମହତ୍ତ୍ୱ ତଥା ଐଶ୍ୱର୍ଯ୍ୟକୁ ମହାତ୍ମା, ଜ୍ଞାନୀ, ଯୋଗୀ ଓ ଋଷିମାନେ ଅନୁଭବ କରିପାରନ୍ତି । ଆପଣ ନଶ୍ୱର ଐଶ୍ୱର୍ଯ୍ୟରେ ମତ୍ତ ହୋଇ ବାହ୍ୟ ଆଡ଼ମ୍ବରକୁ ସବୁକିଛି ବୋଲି ମନେ କରୁଛନ୍ତି । ଯେଉଁ ଯଜ୍ଞରେ ଶିବ ଆରାଧିତ ନୁହନ୍ତି, ସେ ଯଜ୍ଞ ଅଶିବ, ଅମଙ୍ଗଳ ତଥା ପୁଣ୍ୟଦାୟକ ହୋଇ ପାରେନାହିଁ । ଆପଣ ଯାହାକୁ ମହାନ୍ ଐଶ୍ୱର୍ଯ୍ୟ ବୋଲି ମନେ କରୁଛନ୍ତି, ତାହା ମୋ' ସ୍ୱାମୀଙ୍କର ପାଦଧୂଳିର ଗୋଟିଏ କଣିକାକୁ ମଧ୍ୟ ସରି ନୁହେ ।"

ଦକ୍ଷ ବଦ୍ରୂପ ସ୍ୱକ ହାସ୍ୟ କରି କହିଲେ—"ତୁ ବିନା ନିମନ୍ତ୍ରଣରେ ଧାଇଁ ଆସିଛୁ । ତୋ ଘରେ ଯଦି ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ହୋଇ ରହିଛି, ତୁ ସେଠାକୁ ଚାଲିଯା । ଗୋଟିଏ ଲଙ୍ଗଳା ଓ ଫକୀର ପାଇଁ ତୁ ମୋ ସହିତ କଳି କରୁଛୁ । ତୋ ସ୍ୱାମୀକୁ ଏଠାରେ ବଳିଭୋଗ ନ ମିଳିବାରୁ ତୁ ମୋର ବିରୋଧୀ ହୋଇ ଉଠିଛୁ । ତୋ ସ୍ୱାମୀ ଯଦି ଏଡ଼େ ଐଶ୍ୱର୍ଯ୍ୟଶାଳୀ, ତୁ ଏହି ସାଧାରଣ କଥାରେ ଜିଦ୍ ଧରୁଛୁ କାହିଁକି ?"

ସତୀ ଆହୁରି ରାଗିଯାଇ କହିଲେ—"ପିତା, ମୁଁ ଆପଣଙ୍କ ତୁଚ୍ଛ ବଳିପାଇଁ ଏଠାକୁ ଧାଇଁ ଆସିନାହିଁ । ଶିବଙ୍କ ସମ୍ମୁଖରେ ଅଷ୍ଟସିଦ୍ଧି ନବନିଧି ସଦାସର୍ବଦା ହାତ ଯୋଡ଼ି ଛିଡ଼ା ହୋଇଛନ୍ତି । ମୁଁ ତାଙ୍କର ଆଜ୍ଞା ଉଲ୍ଲଂଘନ କରି ଏଠାକୁ ଆସିଛି । ସେ ସର୍ବଜ୍ଞ, ସେ ଆପଣଙ୍କ ମନୋଭାବ ବେଶ୍ ଜାଣିଛନ୍ତି । ମୁଁ ମୋହବଶରେ ତାଙ୍କ ଆଜ୍ଞା ନ ମାନି ଏଠାକୁ ଧାଇଁ ଆସିଛି । ସେ ପରମ ଦୟାଳୁ, ବର୍ତ୍ତମାନ ମୁଁ ଫେରିଗଲେ ମଧ୍ୟ ମୋତେ ଅନାଦର କରିବେ ନାହିଁ; କିନ୍ତୁ ମୁଁ କେଉଁ ମୁହଁରେ ତାଙ୍କ ଶ୍ରୀଚରଣକୁ ଫେରିଯିବି ? ସେ ମୋତେ ଆପଣଙ୍କ ସମ୍ପର୍କ ଫଳରେ ଦାକ୍ଷାୟଣୀ ବୋଲି ଡାକଦେଲେ, ଲଜ୍ଜାରେ ମୋ ମୁଣ୍ଡ ତଳକୁ ହୋଇ-ଯିବ । ମୁଁ ତାଙ୍କ ମୁହଁକୁ ଚାହିଁପାରିବି ନାହିଁ । ତେଣୁ ଆପଣଙ୍କ ସହିତ ସମ୍ବନ୍ଧ ଥିବା ଏହି ଶରୀରଟିକୁ ମୁଁ ସବୁଦିନ ଲାଗି ତ୍ୟାଗ କରିଦେବି । ଏହି ମଳିନ ସଂସର୍ଗ ତଥା ଦୂଷିତ ଦେହକୁ ଅଗ୍ନିରେ ଦଗ୍ଧ କରିଦେବା ପରେ, ମୁଁ ଶିବଙ୍କର ପ୍ରକୃତ ହୃଦୟେଶ୍ୱରୀ ହୋଇ ପାରିବି !"

ମୈତ୍ରେୟ କହିଲେ—"ହେ ବିଦୁର, ଏତିକ କହି ସତୀ ନୀରବ ହୋଇଗଲେ । ସେ ବାଣୀ ନିରୋଧ କରି ତତ୍ତ୍ୱ ଚନ୍ଦ୍ରମୌଳୀଙ୍କଠାରେ ନିବିଷ୍ଟ କରାଇଲେ । ଶୁଦ୍ଧଜଳରେ ତିନିଥର ଆଚମନ କଲେ । ସେ ଦକ୍ଷଙ୍କ ଆସନକୁ ସ୍ପର୍ଶ କଲେନାହିଁ । ତାଙ୍କ ପିନ୍ଧାଶାଢ଼ୀଟିକୁ ଭଲଭାବରେ ଅଣ୍ଟାରେ ଟେକିଦେଇ ସେ ପଦ୍ମାସନ ଲଗାଇ ବସିପଡ଼ିଲେ । ତାଙ୍କର ପଦ୍ମନେତ୍ର ଧୀରେ ଧୀରେ ବନ୍ଦ ହୋଇଗଲା । ସେ ମନରୁ କ୍ରୋଧ ତ୍ୟାଗକରି, ସମାଧି ବଳରେ ଯୋଗାଗ୍ନି ସନ୍ଦୀପିତ କରିଦେଲେ ।

ପ୍ରାଣ ଓ ଅପାନ ବାୟୁ ଫଳରେ ଶରୀରର ସ୍ଥିତି ସମ୍ଭବ ହୋଇଥାଏ । ନାଭି ପ୍ରଦେଶର ନିମ୍ନରେ ଅପାନ ବାୟୁ ରହିଥାଏ । ନାଭିର ଊର୍ଦ୍ଧ୍ୱରେ ଅର୍ଥାତ୍ ହୃଦୟଦେଶରେ ପ୍ରାଣବାୟୁର ସ୍ଥିତି । ପ୍ରାଣବାୟୁ ଉପରକୁ ଉଠେ ଏବଂ ଅପାନ ବାୟୁ ନିମ୍ନକୁ ଗତି କରେ । ଏହି ଦୁଇ ବାୟୁର ଠିକ୍ ମଧ୍ୟଭାଗରେ ସମାନ ବାୟୁ ରହିଥାଏ । ସମାନବାୟୁ ପ୍ରାଣ ଓ ଅପାନ ବାୟୁର ତୁଳାଦଣ୍ଡ ସଦୃଶ । ସମାନ ବାୟୁକୁ ଯୋଗବଳରେ ତା'ର ସ୍ଥିତିରୁ ବିଚ୍ୟୁତ କରାଇ ଦେଲେ, ପ୍ରାଣ ଓ ଅପାନ ବାୟୁ ଶରୀରକୁ ଛାଡ଼ିଯାଆନ୍ତି । ତା' ଫଳରେ ଜୀବାତ୍ମା ଶରୀରକୁ ତ୍ୟାଗ କରିଦିଏ । ଯେଉଁମାନେ ମନ, ପ୍ରାଣ, ବୀର୍ଯ୍ୟ ତଥା ଇନ୍ଦ୍ରିୟକୁ ବଶ କରି ପାରିଛନ୍ତି, ସେମାନଙ୍କ ପ୍ରାଣବାୟୁ ବ୍ରହ୍ମାଣ୍ଡକୁ ଭେଦ କରି ଦଶମ ଦ୍ୱାରରେ ନିର୍ଗତ ହୁଏ । ଏଣୁ ଯୋଗୀପୁରୁଷମାନେ ମୃତ୍ୟୁକୁ ଜୟ କରିଥାଆନ୍ତି । ମହାଯୋଗୀ ଶିବପତ୍ନୀ ସତୀ ଠିକ୍ ସେହି ଉପାୟରେ ଅର୍ଥାତ୍ ଯୋଗାଭ୍ୟାସ ବଳରେ ଶରୀର ତ୍ୟାଗ କରିଥିଲେ ।

ସେ ପ୍ରଥମେ ଆସନ ଦୃଢ଼ କଲେ । ତା'ପରେ ପ୍ରାଣ ଓ ଅପାନ ବାୟୁକୁ ସମାନ ସହିତ ମିଳାଇ କରି ନାଭିମଣ୍ଡଳରେ ସ୍ଥିର କରାଇଲେ । ସେହି ବାୟୁକୁ ସେ ନାଭିଚକ୍ରରୁ ଉଠାଇ ଧୀରେ ଧୀରେ ଅନ୍ୟାନ୍ୟ ଚକ୍ରକୁ ନେବା ଉଦ୍ଦେଶ୍ୟରେ ଭୂତଦେବତା ଓ ବୀଜାକ୍ଷରକୁ ଲକ୍ଷ୍ୟ କରିବା ସଙ୍ଗେ ସଙ୍ଗେ ହୃଦୟସ୍ଥ ଚକ୍ରରେ ସ୍ଥିର କରାଇଲେ । ତତ୍ପରେ ଦେବୀ ହୃଦୟରୁ କଣ୍ଠଚକ୍ର ଏବଂ ସେଠାରୁ ଭ୍ରୂକୁଟୀର ଆଜ୍ଞାଚକ୍ରରେ ସେହି ବାୟୁକୁ ଅତି ସାବଧାନତାର ସହିତ ସ୍ଥିର କରାଇଲେ । ସାଧାରଣ ଯୋଗୀମାନେ ପ୍ରାଣବାୟୁକୁ କଣ୍ଠଚକ୍ରରୁ ଆଜ୍ଞାଚକ୍ରକୁ ଆଣିବାରେ ଅନେକ କଷ୍ଟ ସ୍ୱୀକାର କରନ୍ତି । କାରଣ ବିଶେଷ ସାବଧାନତା ଅବଲମ୍ବନ ନ କଲେ, ପ୍ରାଣବାୟୁ ଆଖି, ନାକ, କାନ ଓ ମୁଖଦ୍ୱାର ଦେଇ ଅଖିପିଛୁଳାକେ ବାହାରି-ଯାଏ । ତେଣୁ ଯୋଗୀମାନେ କଣ୍ଠଚକ୍ରରେ ପ୍ରାଣବାୟୁକୁ ସ୍ଥିର କରାଇ ଅତ୍ୟନ୍ତ ସାବଧାନତା ସହକାରେ ଆଜ୍ଞାଚକ୍ରକୁ ଆଣିବା ଲାଗି ଚେଷ୍ଟା କରନ୍ତି । ସେତିକବେଳେ ଯୋଗୀ ଅନ୍ୟାନ୍ୟ ନ ଦ୍ୱାରଗୁଡ଼ିକୁ ନିରୋଧ କରି ପ୍ରାଣବାୟୁକୁ ଆଜ୍ଞାଚକ୍ରକୁ ଆଣିବାରେ ସଫଳ ହୋଇଯିବା ପରେ, ସେଠାରୁ ମୂର୍ଦ୍ଧାର 'ସହସ୍ରାର ଚକ୍ର'କୁ ଆଣିଥାନ୍ତି । ସହସ୍ରାର ଚକ୍ରରୁ ପ୍ରାଣବାୟୁକୁ ନେଇ ଯୋଗୀ କ୍ରମଶଃ ମାୟାର ସମସ୍ତ ଆବରଣ ଭେଦକରି ମୁକ୍ତ ହୋଇଯାଏ ।

ଦେବୀ ସତୀ ଥିଲେ ମୁକ୍ତସ୍ୱରୂପା । ସେ ମୁକ୍ତିଦାତା ଶିବଙ୍କ କୃପାରୁ ଶରୀରରେ ବାୟୁ ଓ ଅଗ୍ନି ଉତ୍ପନ୍ନ କରାଇ, ଯୋଗାଗ୍ନିରେ ନିଜକୁ ଭସ୍ମ କରାଇଦେଲେ । ସମସ୍ତଙ୍କ ଆଖି ଆଗରେ ଦେବୀ ଭସ୍ମ ହୋଇଗଲେ ଅର୍ଥାତ୍ ସତୀ ପ୍ରାଣବାୟୁକୁ ଭସ୍ମ କରାଇ ନିର୍ଜୀବ ହୋଇ ସେଠାରେ ଢଳି ପଡ଼ିଲେ । ଦେବ, ଦାନବ, ଯକ୍ଷ, ଗୁହ୍ୟକ, ଭୂତ, ପ୍ରେତ ଓ ପିଶାଚଗଣ ଦକ୍ଷକୁ ଧିକ୍କାର କରିବାକୁ ଲାଗିଲେ । ସମସ୍ତେ ଭୟରେ ପ୍ରମାଦ ଗଣିବାକୁ ଲାଗିଲେ ।

ମୈତ୍ରେୟ କହିଲେ—"ହେ ବିଦୁର, ସତୀ ଯୋଗାଗ୍ନିରେ ପ୍ରାଣବାୟୁକୁ ଭସ୍ମ କରାଇବାମାତ୍ରେ ଦକ୍ଷଙ୍କ ଯଜ୍ଞ ଶ୍ରୀହୀନ ହୋଇ ପଡ଼ିଲା । ଦକ୍ଷପୁରର ସ୍ତ୍ରୀମାନେ 'ହାୟ ସତୀ' ସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ଦକ୍ଷ ମଧ୍ୟ ବିଚଳିତ ହୋଇ ଉଠିଲେ ।

## ଛପ୍ପୟ

"ଐସେ କହକେ ସତୀ ଓଢ଼ିକେ ପୀରୀ ସାରୀ ।
ଯୁଗଲ ନେତ୍ର କରି ବନ୍ଦ ଜଗତ କୀ ସୁରତ ବିସାରୀ ॥
ନାଭିଚକ୍ର ତେଂ ପ୍ରାନ ଉଠାୟେ ହୃୟ ମେଂ ଲାଇ ।
କଣ୍ଠ ଭ୍ରୂକୁଟି କେ ମଧ୍ୟ ଅନଲ ତେଂ ଅନଲ ଜରାଇ ॥
ଯୋଗୀ ଅଗ୍ନି ତେଂ ତନୁ ତଜ୍ୟୋ ଲୀନଭଈ ଶିବ ଧ୍ୟାନ ମେଂ ।
କଲୁ କୁଟିଲ ପିତୁ ଦକ୍ଷକେ କୁଁ ରେଂଗୀ ନହୀଂ କାନ ମେ ॥"



# ଶିବଗଣଙ୍କ ପ୍ରକୋପ

"ସୋଽୟଂ ଦୁର୍ମର୍ଷହୃଦୟୋ ବ୍ରହ୍ମଧ୍ରୁକ୍ ଚ
ଲୋକେଽପକୀର୍ତ୍ତିଂ ମହତୀ ମବାପ୍ସ୍ୟତି ।
ଯଦଙ୍ଗଜାଂ ସ୍ୱାଂ ପୁରୁଷ ଦ୍ୱିଡୁଦ୍ୟତାଂ
ନ ପ୍ରତ୍ୟଷେଧନ୍ ମୃତୟେଽପରାଧତଃ ॥"

(ଭାଗବତ ୪ । ୪ । ୩୦)

ଛପ୍ପୟ

"ଦେଖ୍ୟୋ ଚରିତ ବିଚିତ୍ର ଡରେ ସବ ଜଗ କେ ପ୍ରାନୀ ।
ଜଗତ ଶୂନ୍ୟ ସମ ଭୟୋ ପ୍ରଲୟବେଲା ସବ ଜାନୀ ॥
ଧିକ୍କାରେଂ ସବ ଲୋଗ ଦକ୍ଷ କୂଁ ଦେୱେଂ ଗାରୀ ।
ସମ୍ମୁଖ ଦୁହିତା ମରୀ ନହୀଂ ବରଜୀ ସୁକୁମାରୀ ॥
ପିତା ନ ହୀଂ ଅତି ପତିତ ୟହ ଶିବ ଦ୍ରୋହୀ କଲୁଷିତ ହୃଦୟ ।
ସିଂହ ବ୍ୟାଘ୍ର ହୁ ସୁତା ଲଖି ଛାଡ଼ କ୍ରୂରତା ହୋଁ ସଦୟ ॥"

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଯୋଗାଗ୍ନିରେ ସତୀ ଭସ୍ମ ହୋଇଯିବା ପରେ ସମସ୍ତେ କହିଲେ—ଏ ବ୍ରହ୍ମଦ୍ରୋହୀ ଏବଂ କୁଟିଳ ହୃଦୟ ଦକ୍ଷ ଇହଲୋକରେ ନିଶ୍ଚୟ ଅପକୀର୍ତ୍ତି ପ୍ରାପ୍ତ ହେବେ । ଏହି ଶିବଦ୍ରୋହୀର ଅପରାଧ ପାଇଁ ସତୀ ପ୍ରାଣତ୍ୟାଗ କରୁଥିବାର ଦେଖି ମଧ୍ୟ ସେ ବାରଣ କଲେନାହିଁ ।"

କେତେକ ଲୋକ ସ୍ୱାର୍ଥ ଓ ଈର୍ଷା ବଶରୁ ଅନ୍ୟର ଭଲ କାମକୁ ନିନ୍ଦା କରନ୍ତି । ଅନ୍ୟ କେତେକ ଲୋକ ଭୟ କିମ୍ବା ତୋଷାମଦ କରିବା ଇଚ୍ଛାରେ ଅନ୍ୟର କ୍ରୂରକର୍ମକୁ ପ୍ରଶଂସା କରିଥାନ୍ତି; କିନ୍ତୁ ସମସ୍ତେ ମନେ ମନେ ଖରାପ କାମକୁ ନିନ୍ଦା ଓ ଭଲ କାମକୁ ପ୍ରଶଂସା କରନ୍ତି । ପରିସ୍ଥିତିର ଚାପରେ ଯେ ଯାହା କରୁନା କାହିଁକି, ସମସ୍ତେ ପରିଶେଷରେ ସତ୍-କର୍ମକୁ ପ୍ରଶଂସା ଓ ଅସତ୍ କାର୍ଯ୍ୟର ନିନ୍ଦା କରିଥା'ନ୍ତି ।

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ସମସ୍ତଙ୍କ ଆଗରେ ସତୀ ଯୋଗାଗ୍ନିରେ ଶରୀରକୁ ଦଗ୍‌ଧ କରିଦେଲେ । ତା'ଫଳରେ ତାଙ୍କ ଶରୀର 'ଇ' ଶକ୍ତି ରହିତ ହୋଇ 'ଶବ'ରେ ପରିଣତ ହୋଇଗଲା । ସ୍ୱା'ଫଳରେ ଦଶଦିଗରେ ହା'ହା'କାର ପଡ଼ିଗଲା । ସମସ୍ତେ କହିବାକୁ ଲାଗିଲେ—ହାୟ···ସତୀ ବୃଥାଟାରେ ଏ' ପାପୀ ପାଇଁ ଶରୀର ତ୍ୟାଗ କରି ଦେଲେ ।"

କେତେକ କହିଲେ—"ଶିବସ୍ତ୍ରୀ ପିତୃସ୍ନେହ ପାଇବା ପାଇଁ ଧାଇଁ ଆସିଥିଲେ । ସେ ସାଧାରଣ ସ୍ତ୍ରୀ ନଥିଲେ । ସେ ଚରାଚର ବିଶ୍ୱର ଆରାଧ୍ୟ ବିଶ୍ୱନାଥଙ୍କ ଅର୍ଦ୍ଧାଙ୍ଗିନୀ । ତାଙ୍କ ସହିତ ଏପରି ବ୍ୟବହାର କରିବା ଦକ୍ଷର ଉଚିତ କାର୍ଯ୍ୟ ହେଲା ନାହିଁ ।"

ଅନ୍ୟ କେତେକ କହିଲେ—"ବ୍ୟକ୍ତି ଯେତେ କ୍ରୂର ହେଲେ ମଧ୍ୟ ନିଜ ସନ୍ତାନମାନଙ୍କ ପ୍ରତି ଆଦୌ ନିର୍ଦ୍ଦୟ ହୋଇ ପାରେନାହିଁ । ସିଂହ ବ୍ୟାଘ୍ରାଦି ହିଂସ୍ର ପ୍ରାଣୀମାନେ ମଧ୍ୟ ନିଜ ସନ୍ତାନଙ୍କୁ ସ୍ନେହ କରନ୍ତି । ସତୀ ହେଉଛନ୍ତି—ଜଗତର ଆଦରଣୀୟା । ତାଙ୍କୁ ତିରସ୍କାର କରି ଦକ୍ଷ କେବେହେଲେ ସୁଖୀ ହୋଇ ପାରିବନାହିଁ ।"

ଏପରି ଭାବରେ ସମସ୍ତେ ଦକ୍ଷର କାର୍ଯ୍ୟକୁ ନିନ୍ଦା କରିବାକୁ ଲାଗିଲେ; କିନ୍ତୁ ଶିବ ପାର୍ଶ୍ୱଦମାନେ ଦକ୍ଷ ଉପରେ ଭୀଷଣ ଭାବରେ ରାଗି ଗଲେ । ପ୍ରଥମରୁ ସେମାନେ ସ୍ୱାମିଜୀଙ୍କ ଅପମାନରେ କ୍ରୁଦ୍ଧ ହୋଇଥିଲେ; କିନ୍ତୁ ସତୀ ପ୍ରାଣତ୍ୟାଗ କରିବା ପରେ ସେମାନେ କ୍ରୋଧରେ ଅନ୍ଧ ହୋଇଗଲେ । ସେମାନେ ନିଜ ନିଜର ଅସ୍ତ୍ରଶସ୍ତ୍ର ଧାରଣ କରି ଦକ୍ଷକୁ ମାରିବା ଲାଗି ଧାଇଁଗଲେ । ଶିବଗଣଙ୍କ ପ୍ରଚଣ୍ଡ କ୍ରୋଧ ଦେଖି କହିଲେ ଦକ୍ଷ—"ହେ ଭୃଗୁ ମହର୍ଷି, ଆପଣ ମୋ' ଯଜ୍ଞ ରକ୍ଷା କରନ୍ତୁ । ଆପଣ ମନ୍ତ୍ର ବଳରେ ଶିବଗଣଙ୍କୁ ସମୁଚିତ ଦଣ୍ଡବିଧାନ କରନ୍ତୁ । ନୋହିଲେ, ସେମାନେ ମୋ' ଯଜ୍ଞକୁ ବିଫଳ କରିଦେବେ ।"

ଏହା ଶୁଣି ଭୃଗୁ ମହର୍ଷି କହିଲେ—"ଆପଣ ସେଥିଲାଗି ଚିନ୍ତା କରନ୍ତୁ ନାହିଁ । ମନ୍ତ୍ର ସମ୍ମୁଖରେ ଭୂତ, ପ୍ରେତ କିଛି ହେଲେ କରି ପାରିବେ ନାହିଁ । ମୁଁ ଏହିକ୍ଷଣି ସେମାନଙ୍କୁ ତଡ଼ି ଦେଉଛି ।"

ଏହା କହି ଭୃଗୁ ବିଧିପୂର୍ବକ ଦକ୍ଷିଣାଗ୍ନିରେ ହବନ ଆରମ୍ଭ କରନ୍ତେ 'ଋଭୁ' ନାମକ ସୋମପାୟୀ ଦେବଗଣ ଉତ୍ପନ୍ନ ହୋଇ ଶିବଗଣଙ୍କୁ ଘଉଡ଼ାଇ ଦେବାକୁ ଲାଗିଲେ ।

ଭୂତଗଣମାନେ ତେଜସ୍ୱୀ ଋଭୁଙ୍କଦ୍ୱାରା ପରାସ୍ତ ହୋଇ ପଳାଇ ଯିବାରୁ ଦକ୍ଷ ମନେ ମନେ ଅତ୍ୟନ୍ତ ପ୍ରୀତ ହେଲେ ।

ଏହା ଶୁଣି ପଚାରିଲେ ବିଦୁର—"ମହାଭାଗ, ଶିବଗଣମାନେ ଅନ୍ୟାୟ ଆଚରଣକାରୀ ଦକ୍ଷଙ୍କୁ ଦଣ୍ଡ ଦେଉଥିବା ସମୟରେ ଋଭୁ ସେମାନଙ୍କୁ ଘଉଡ଼ାଇ ଦେଲେ କାହିଁକି ? ସେଥିରୁ ମନେ ହେଉଛି—ନ୍ୟାୟ ମାର୍ଗରେ କାର୍ଯ୍ୟ କଲେ ମଧ୍ୟ ତା'ର ବିରୋଧାଚରଣ ଲାଗି ଦେବଗଣମାନେ ଆସିଥାଆନ୍ତି ।"

ଏହା ଶୁଣି ଉତ୍ତର ଦେଲେ ମୈତ୍ରେୟ—"ହେ ବିଦୁର ! ଆପଣଙ୍କ ପ୍ରଶ୍ନ ଅତ୍ୟନ୍ତ ଗୂଢ଼ । ତଥାପି ଶୁଣନ୍ତୁ ! ଦକ୍ଷ ଦ୍ୱେଷପୂର୍ଣ୍ଣ ଭାବନାରେ ଯଜ୍ଞ କରୁଥିଲେ ମଧ୍ୟ ଶାସ୍ତ୍ରୀୟ ବିଧି-ବିଧାନରେ ସେ ଯଜ୍ଞ ସମ୍ପାଦନ କରୁଥିଲେ । ଅନ୍ୟ ଯାହାକିଛି ହେଉନା କାହିଁକି, ବିଧିପୂର୍ବକ ଦେବତା ପୂଜନରେ ଦକ୍ଷ ନିମଗ୍ନ ଥିଲେ ତ ! କିନ୍ତୁ ଏହି ଯଜ୍ଞ ଫଳରେ ତା'ର ଅହଙ୍କାର ଆହୁରି ବୃଦ୍ଧି ପାଇବାକୁ ଲାଗିଲା । କାରଣ, ସୁସ୍ଥ ଲୋକ ଘିଅ ଖାଇଲେ ତା'ର ବଳବୀର୍ଯ୍ୟ ବୃଦ୍ଧି ପାଏ; କିନ୍ତୁ ରୋଗୀ ଅଧିକ ଘିଅ ଖାଇଲେ ତା'ର ରୋଗ ବୃଦ୍ଧି ହୋଇଥାଏ । ପ୍ରବଳ ତମୋଗୁଣ ସତ୍ତ୍ୱଗୁଣକୁ ଆପାତତଃ ପରାଭୂତ କରିଥାଏ । ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ତମୋଗୁଣ ସମ୍ପନ୍ନ ବ୍ୟକ୍ତି ହୋଇଥିବାରୁ, ସେ ଦୁହେଁ ସତ୍ତ୍ୱଗୁଣଶାଳୀ ଦେବତାମାନଙ୍କୁ ପରାସ୍ତ କରି ଦେଇଥିଲେ । ଦେବଗଣ ବିଶ୍ୱସ୍ରଷ୍ଟାଙ୍କ ନିକଟରେ ପ୍ରାର୍ଥନା କରନ୍ତେ, ସ୍ୱୟଂ ପରମେଶ୍ୱର କହିଲେ—"ବର୍ତ୍ତମାନ ତା'ର ସମୟ; ସେ ଯାହା ଇଚ୍ଛା ତାହା କରି ଯାଉଛି । ଉପଯୁକ୍ତ ସମୟରେ ମୁଁ ତାକୁ ବଧ କରିବି ।" ପ୍ରହ୍ଲାଦର ସତ୍ତ୍ୱଗୁଣ ପ୍ରବଳ ହୋଇ ହିରଣ୍ୟକଶିପୁର ତମୋଗୁଣଠାରୁ ବଳୀୟାନ୍ ହୁଅନ୍ତେ ପ୍ରଭୁ ନରସିଂହ ଖମ୍ବରୁ ବାହାରି ତାକୁ ବିନାଶ କରିଥିଲେ । ଅସୁରମାନେ ମହାପରାକ୍ରମଶାଳୀ ବିଷ୍ଣୁଙ୍କ ସହିତ ଶତ୍ରୁତା କରି ତମୋଗୁଣ ସମ୍ପନ୍ନ ଶରୀରକୁ ମୋକ୍ଷ କରିଥିଲେ ।

"ଦକ୍ଷଙ୍କର ଅଭିମାନ, ପ୍ରଭାବ ଓ ଐଶ୍ୱର୍ଯ୍ୟ ଶିବଗଣଙ୍କ ତୁଳନାରେ ପ୍ରବଳ ହୋଇଥିଲା । ତେଣୁ ସାଧାରଣ ଶିବଗଣ ପରାସ୍ତ ହୋଇଗଲେ; କିନ୍ତୁ ଅଧିକ ବଳଶାଳୀ ଶିବଗଣ ଆସିଗଲେ, ଦକ୍ଷର ସମସ୍ତ ତେଜ ପରାଭୂତ ହୋଇଯିବ ।"

ଏହା ଶୁଣିବା ପରେ ବିଦୁର ଆନନ୍ଦିତ ହୋଇ କହିଲେ—"ମୁଁ ବେଶ୍ ବୁଝି ପାରିଲି । ସମୟ ତଥା ପରିସ୍ଥିତି ଅନୁସାରେ ଅଧର୍ମ ପ୍ରବଳ ହୋଇ ଉଠେ; କିନ୍ତୁ ପରିଶେଷରେ ଧର୍ମର ବିଜୟ ସୁନିଶ୍ଚିତ ହୋଇଥାଏ । ହଁ କହନ୍ତୁ, ତା'ପରେ କ'ଣ ହେଲା ।"

"ଆଉ ହୁଅନ୍ତା କଅଣ ? ଯାହା ହେବାର କଥା, ତାହା ହୋଇଥିଲା । ଦ୍ୱେଷ ଓ ଈର୍ଷାର ପରିଣାମ ହେଉଛି—କଳହ, ହାଣକାଟ ଓ ରକ୍ତପାତ । ପରିଶେଷରେ ତାହାହିଁ ହେଲା ।"

"ଦେବର୍ଷି ନାରଦ ସଙ୍ଗେ ସଙ୍ଗେ ଯାଇ ଶିବଙ୍କୁ ଏହି ସମ୍ବାଦ ଶୁଣାଇ ଦେଲେ । ସଦାଶିବ ମହାସତୀଙ୍କ ସମ୍ବନ୍ଧରେ ଚିନ୍ତା କରୁଥିବା ସମୟରେ ନାରଦ ଯାଇ ପ୍ରଭୁଙ୍କ ଚରଣାରବିନ୍ଦରେ ପ୍ରଣାମ ଜଣାଇଲେ ।"

## ଛପ୍ପୟ

"ସତୀ ଦେହ ନିର୍ଜୀବ ଲଖ୍ୟୋ ଶିବଗଣ ରସିଯ୍ତାନେ ।
ଯଜ୍ଞ ନାଶ ହୃତ ଚଲେ ଅସ୍ତ୍ର ନିଜ ନିଜ ସବ ତାନେ ॥
ଭୃଗୁନେ ଦେଖେ ଭୂତ ଭୟଙ୍କର ବିଘ୍ନ କରନ୍ତେ ।
ଯଜ୍ଞ କରହୁଁ ବିଧ୍ୱଂସ ଦକ୍ଷ କେ ପ୍ରାନ ହରନ୍ତେ ॥
ଯଜ୍ଞ ବିଘ୍ନ ନାଶକ ଋଚ ପଢ଼ୀ ପ୍ରକଟ ରିଭୁ ସୁର ଭଯ୍ତେ ।
ଭନନେ ମାରେ ଶମ୍ଭୁଗଣ ଭଯ୍ତେ ପରାଜିତ ଭଗି ଗଯ୍ତେ ॥"



# ଶିବଙ୍କ କ୍ରୋଧ ଓ ବୀରଭଦ୍ର ଜନ୍ମ

"ଭବୋ ଭବାନ୍ୟା ନିଧନଂ ପ୍ରଜାପତେ—
ରସତ୍‌କୃତାୟାଅବଗମ୍ୟ ନାରଦାତ୍ ।
ସ୍ୱପାର୍ଷଦସୈନ୍ୟଂ ଚ ତଦଧ୍ୱରଭୁର୍ଭି—
ର୍ବିଦ୍ରାବିତଂ କ୍ରୋଧମପାରମାଦଧେ ॥"

(ଭାଗବତ ୪।୫।୧)

ଛପ୍‌ପୟ

"ଭୂତପ୍ରେତ ଉତ ଭଗେ ଭଗେ ଇତ ନାରଦ ହରପୈ ।
ଦେଖେ ବିଭୂ ବିଶ୍ୱେଶ ବିରାଜେ ହିମଗିରିବର ପୈ ॥
କରି ବନ୍ଦନା ବିଲଖି ବିନୟୟୁତଂ ବୋଲେ ବାନୀ ।
ପିତା କରେ୍ୟା ଅପମାନ ଜରୀ ଯୋଗାଗ୍ନି ଭବାନୀ ॥
ତବ ପାର୍ଷଦଗଣ ଅସ୍ତ୍ର ଲୈ ଯୁଦ୍ଧ କରନ ଉଦ୍ୟତ ଭୟେ ।
କିନ୍ତୁ କରେ ଭୃଗୁ ପ୍ରକଟ ଋଭୁ ତିନ୍ହେ ଦେଖି ଗଣ ଡରି ଗୟେ ॥"

ଅର୍ଥାତ୍—ମୈତ୍ରେୟ କହିଲେ—"ହେ ବିଦୁର, ନାରଦ ଆସି କହିଲେ—ଦକ୍ଷଠାରୁ ଅପମାନିତା ହୋଇ ଭବାନୀ ଯୋଗାଗ୍ନିରେ ଶରୀର ତ୍ୟାଗ କରିଦେଲେ । ଆପଣଙ୍କ ପାର୍ଶ୍ୱଦମାନେ ଯୁଦ୍ଧ ଆରମ୍ଭ କରନ୍ତେ ଯଜ୍ଞରୁ ବାହାରି ଋଭୁ ନାମକ ଦେବଗଣ ସେମାନଙ୍କୁ ଘଉଡ଼ାଇ ଦେଲେ । ଏହି ସମାଚାର ଶୁଣି ଶିବ ଅତ୍ୟନ୍ତ ରାଗିଗଲେ ।"

ସମ୍ମୁଖରେ ଥିଲେ ପ୍ରେମର ପରିପ୍ରକାଶ ଯଥେଷ୍ଟ ହୋଇପାରେ ନାହିଁ । ଯେପରି ଗୋଟିଏ ବେପାରୀର ଧନ ଅନେକ ସ୍ଥାନରେ ବେପାରରେ ଲାଗିଥାଏ । ସମସ୍ତ ଧନ ତାଙ୍କରି ହୋଇଥିଲେ ହେଁ ଭିନ୍ନ ଭିନ୍ନ ସ୍ଥାନରେ ରହିଥିବାରୁ, ତା'ର ଗୁରୁତ୍ୱ ସେ ଅନୁଭବ କରି ପାରେନାହିଁ; କିନ୍ତୁ ସବୁ ଧନ ତା' ହାତକୁ ଆସିଗଲେ, ସେ ତା'ର ଗୁରୁତ୍ୱ ଅନୁଭବ କରେ ଏବଂ ଚିନ୍ତା କରେ—'ଆରେ···ଏତେ ଗୁଡ଼ାଏ ଧନ ମୋ ପାଖରେ ଥିଲା !' ସେହିପରି ପ୍ରେମାସ୍ପଦ ବସ୍ତୁ ନିଜ ପାଖରେ ଥିଲେ, ମନୁଷ୍ୟ ତା'ର ଉପଯୋଗ ସହଜରେ କରିପାରେ ନାହିଁ । କେବଳ ସେହି ବସ୍ତୁକୁ ନିରୀକ୍ଷଣ କରି ତା'ର ମନ ଆନନ୍ଦରେ ଭରିଉଠେ । ଭୋଜନର ଗୁରୁତ୍ୱ ମନୁଷ୍ୟ ଭୋକିଲା ଥିବା ସମୟରେ ଅନୁଭବ କରେ । ମନୁଷ୍ୟ ଗୁଣର ମହତ୍ତ୍ୱ ତା'ର ଅଭାବ ସମୟରେ ଅନୁଭବ କରେ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର, ସତୀ ଶିବଙ୍କ ଆଜ୍ଞା ନ ମାନି ଚାଲିଯାଇ ଥିବାରୁ, ଶିବଙ୍କ ମନରେ ଅବଶ୍ୟ କ୍ଷୋଭ ଜାତ ହୋଇଥିଲା । ସେ ତାହାକୁ ସ୍ତ୍ରୀର ଜିଦ୍ ବୋଲି ମନେ କରି ଉଦାସୀନ ହୋଇଥିଲେ; କିନ୍ତୁ ନାରଦଙ୍କ ମୁଖରୁ ସତୀଙ୍କର ବିନାଶବାର୍ତ୍ତା ଶୁଣି ପ୍ରାଣପ୍ରିୟାଙ୍କ ପ୍ରତି ତାଙ୍କ ହୃଦୟର ପ୍ରେମ ଅତ୍ୟଧିକ ବୃଦ୍ଧି ପାଇଥିଲା । ସେ କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହୋଇଉଠି ଭାବିଲେ—"ଦକ୍ଷ ଏଡ଼େ ଅହଙ୍କାରୀ ହୋଇ ପାରିଲା ! ସେ ମୋରି ପାଇଁ ନିଜର ପୁତ୍ରୀକୁ ଶତ୍ରୁପରି ବ୍ୟବହାର କଲା !! ମୁଁ ମୋ ଅପମାନ ସହିପାରେ; କିନ୍ତୁ ଭକ୍ତର ଅପମାନ ମୋ ପକ୍ଷେ ଅସହ୍ୟ । ମୁଁ ଆଜି ଦକ୍ଷର ଅହଙ୍କାର ଚୂର୍ଣ୍ଣ କରିବି ! ସେ ଆଜି ଜାଣିପାରିବ ଯେ, ସତୀଙ୍କୁ ଅପମାନିତ କଲେ, ତା'ର କି ବିଷମୟ ଫଳ ଫଳିପାରେ ।"

ଏହା ଚିନ୍ତା କରିବାମାତ୍ରେ ତାଙ୍କ ଭୁଜଦଣ୍ଡ କମ୍ପି ଉଠିଲା ଏବଂ ଭ୍ରୂକୁଟୀ କୁଟିଳ ହୋଇଗଲା । ସେ ନିଜର ପିଙ୍ଗଳ ଜଟାରୁ ଗୋଟିଏ ଉପାଡ଼ି ପୃଥିବୀ ଉପରେ ଜୋର୍‌ରେ ପକାଇଦେଲେ । ଜଟାରୁ ଗୋଟିଏ ଭୀଷଣାକାର ପୁରୁଷ ସଙ୍ଗେ ସଙ୍ଗେ ଉତ୍ପନ୍ନ ହୋଇ ଶିବଙ୍କ ଆଗରେ ହାତ ଯୋଡ଼ି ଛିଡ଼ା ହୋଇଗଲା । ତା'ର ସହସ୍ର ଭୁଜରେ ସହସ୍ର ଅସ୍ତ୍ରଶସ୍ତ୍ର ରହିଥିଲା । ନାରଦ ସେହି ଅଦ୍ଭୁତ ପୁରୁଷର ସ୍ୱରୂପ ଦେଖି କମ୍ପି ଉଠିଲେ । ସେ ସଙ୍ଗେ-ସଙ୍ଗେ ସେଠାରୁ ପଳାଇଗଲେ ।

ବୀରଭଦ୍ର ଉତ୍ପନ୍ନ ହେବାମାତ୍ରେ ଚତୁର୍ଦ୍ଦିଗକୁ ରୋଷପୂର୍ଣ୍ଣ ନେତ୍ରରେ ଚାହିଁଦେଲେ । ସେ ନିକଟରେ ଆଉ କାହାରିକୁ ନ ଦେଖି, ଶିବଙ୍କୁ କହିଲେ—"ପ୍ରଭୋ, ଆପଣ ମୋତେ କାହିଁକି ଉତ୍ପନ୍ନ କଲେ ? ଆପଣଙ୍କ ଆଜ୍ଞା ପାଇଲେ ମୁଁ ଏହିକ୍ଷଣି ସାତସମୁଦ୍ରର ଜଳକୁ ପିଇଦେବି, ସୁମେରୁ ପର୍ବତକୁ ଉପାଡ଼ି ଚୂର୍ଣ୍ଣ କରିଦେବି । ଦିଗ୍‌ଗଜମାନଙ୍କ ଦାନ୍ତକୁ ଉପାଡ଼ି ସେମାନଙ୍କୁ ପାଦରେ ଦଳିଦେବି । ଲୋକପାଳମାନଙ୍କ ଭବନ ଭସ୍ମ କରିଦେଇ, ସେମାନଙ୍କୁ ରସାତଳଗାମୀ କରାଇବି । ପ୍ରଳୟକାଳ ଆସି ଉପସ୍ଥିତ ହୋଇ ନଥିଲେ ମଧ୍ୟ ମୁଁ ପ୍ରଳୟ କରିଦେବି ।"

ବୀରଭଦ୍ରଙ୍କ ଦୃଢ଼ତାପୂର୍ଣ୍ଣ ବାଣୀ ଶୁଣି ସଦାଶିବ ସନ୍ତୋଷ ପ୍ରକାଶ କରି କହିଲେ—"ମୁଁ ପ୍ରଳୟ କରିବାକୁ ଚାହେଁ ନାହିଁ । ଯେଉଁ ଦୁଷ୍ଟ ଦକ୍ଷ ପାଇଁ ମୋ' ପ୍ରାଣପ୍ରିୟା ସତୀ ଯୋଗାଗ୍ନିରେ ଶରୀର ତ୍ୟାଗ କରିଦେଇଛି, ସେହି ଅଧମକୁ ତୁମେ ଯାଇ ବିନାଶ କର । ତାର ଯଜ୍ଞକୁ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ତା'ର ଅନୁଗାମୀମାନଙ୍କୁ ସମୁଚିତ ଦଣ୍ଡ ଦିଅ । ତୁମେ ମୋର ଅଂଶରୁ ଉତ୍ପନ୍ନ ହୋଇଛ; ତେଣୁ ତୁମେ ଆଜିଠାରୁ ମୋ' ଗଣ ମଧ୍ୟରେ ସର୍ବଶ୍ରେଷ୍ଠ ବୀରରୂପେ ଗଣ୍ୟ ହେବ । ମୁଁ ତୁମକୁ ମୋ' ପାର୍ଷଦମାନଙ୍କ ମଧ୍ୟରେ ନାୟକ ପଦରେ ଅଧିଷ୍ଠିତ କରୁଛି ।"

ଏହା ଶୁଣି ବୀରଭଦ୍ର କହିଲେ—"ପ୍ରଭୋ, ମୁଁ ଏହିକ୍ଷଣି ଆପଣଙ୍କ କାର୍ଯ୍ୟସାଧନ କରି ଫେରିଆସୁଛି ।"

ମୈତ୍ରେୟ କହିଲେ—"ହେ ବିଦୁର, ଏତିକ କହି ବୀରଭଦ୍ର ଶିବଙ୍କୁ ପ୍ରଦକ୍ଷିଣ କରି ଦକ୍ଷଙ୍କ ଯଜ୍ଞଶାଳା ଆଡ଼କୁ ପ୍ରସ୍ଥାନ କଲେ ।"

## ଛପ୍‌ପୟ

କରେଂ୍ୟା କପରଦ୍ଧ କୋପ ଅଧର ଦାଁତନ ତେଂ କାଟେଂ ।
ଚଢ଼ୀ ଭୃକୁଟି ମୁଖ ଲଲ ଓଠ ଜିହ୍ୱା ତେଂ ଚାଟେଂ ॥
ଉଠିକେ ଝପଟେଂ ଏକ ଜଟା ତେଂ ବାଲୁ ଉଖାରେଂ୍ୟା ।
କଟ କଟାଇକେଂ ଦାଁତ ପଟି ପୃଥିବୀ ପୈ ମାରେଂ୍ୟା ॥
ମାରତ ଇ ପ୍ରକଟ ବିକଟ ନର, କାରେ ଅଞ୍ଜନ ଗିରି ସରିସ ।
ପ୍ରକଟେଂ୍ୟା ଭୀଷଣ ସହସଭୁଜ, ଘେରୀ ତନୁତେଂ ଦଶୋଦିଶ ॥



## ଯଜ୍ଞଧ୍ୱଂସ ଲାଗି ବୀରଭଦ୍ରଙ୍କ ଗମନ

(୧୦୧)

"ଅନ୍ୱୀୟମାନଃ ସତୁ ରୁଦ୍ରପାର୍ଷଦୈ—
ଭୃଶଂ ନଦନ୍ତି ର୍ବ୍ୟନଦତ୍ ସୁଭୈରବମ୍ ।
ଉଦ୍ୟମ୍ୟ ଶୂଳଂ ଜଗଦନ୍ତକାନ୍ତକମ୍
ସ ପ୍ରାଦ୍ରବଦ୍ ଘୋଷଣଭୂଷଣାଙ୍ଘ୍ରିଃ ॥"

(ଭାଗବତ ୪।୫।୬)

ଛପ୍ପୟ

"ବୋଲେଁ ହେ ବିଶ୍ୱେଶ ! ବତାଓ କିନକୁଁ ମାରୁଁ ।
ସୋଖୁଁ ସବହି ସଲିଲ ସକଲ ସଂସାର ସଂହାରୁଁ ॥
ରୁଦ୍ର କୋପ କରି କହେ—ଅସ୍ତ୍ର ଅପନେ ସଂହାରୋ ।
ଦକ୍ଷଯଜ୍ଞ ମେଂ ଜାଇ ଦକ୍ଷକୁଁ ଅବହି ମାରୋ ॥
ସୁନତ ଭୟଙ୍କର ରୁଦ୍ରଗଣ, ହା ହା ହୁ ହୁ କରି ଚଲେ ।
କର କଙ୍କଣ ମାଥେ ମୁକୁଟ, କଟି କିଙ୍କିଣୀ ମାଲ ଗଲେଁ" ॥

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ବୀରଭଦ୍ର ଅନେକ ରୁଦ୍ରପାର୍ଷଦଙ୍କ ଗହଣରେ ଭୀଷଣ ଗର୍ଜନ କରି ଏକ ଭୟଙ୍କର ତ୍ରିଶୂଳ ଧାରଣପୂର୍ବକ ଦକ୍ଷଙ୍କ ଯଜ୍ଞଆଡ଼କୁ ଅଗ୍ରସର ହେଲେ । ସେ ଜଗତକୁ ଧ୍ୱଂସ କରିଦେବା ପାଇଁ ସକ୍ଷମ ଅଟନ୍ତି । ସେ ଶୀଘ୍ର ଶୀଘ୍ର ଗମନ କରୁଥିବାରୁ, ତାଙ୍କ ପାଦର ନୂପୁର ଝମ୍ ଝମ୍ କରି ବାଜୁଥିଲା ।"

କଥାରେ ଅଛୁ—'ଜନ୍ମ ପିତା, ତା' ସାଥିରେ ପୁଣି ଭୂଇଁ ଜନ୍ମରସ' ରୁଦ୍ର ସ୍ୱୟଂ ସଂହାର ଶକ୍ତି; ସେ ଯଦି, କ୍ରୋଧ ପ୍ରକାଶ କରିବେ, ତା' ହେଲେ କ'ଣ ଆଉ ଜଗତ ରହିବ ? ବୀରଭଦ୍ର ପ୍ରଳୟ ମୂର୍ତ୍ତିପରି ଦେଖାଗଲେ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର ସଦାଶିବଙ୍କ ଆଜ୍ଞାପାଇ ବୀରଭଦ୍ର ତାଙ୍କ ଶ୍ରୀଚରଣରେ ପ୍ରଣାମ କରି କହିଲେ—"ମୋର ଆଉ ସୈନ୍ୟସାମନ୍ତ ଲୋଡ଼ା ନାହିଁ । ମୁଁ ମୋର ସହସ୍ର ଭୁଜରେ ସହସ୍ର ଅସ୍ତ୍ର ଏକାବେଳକେ ପ୍ରୟୋଗ କରିପାରିବି !"

ସଦାଶିବ ଉତ୍ତର ଦେଇ କହିଲେ—"ନା ତୁମେ ସୈନ୍ୟ ସହିତ ଆଡ଼ମ୍ବର ସହକାରେ ଯାଅ । ତୁମେ ମୋର ପାର୍ଷଦମାନଙ୍କ ସହିତ ଭୀଷଣ କୋଳାହଳ କରି ପୃଥିବୀ କମ୍ପାଇ କମ୍ପାଇ ଦକ୍ଷଯଜ୍ଞକୁ ଗମନ କର ।"

ଏହା ଶୁଣି ବୀରଭଦ୍ର ଶିବଗଣଙ୍କୁ ପ୍ରସ୍ତୁତ ହୋଇଯିବା ଲାଗି ଆଦେଶ ଦେଲେ । ଶିବଗଣମାନେ ଭସ୍ମ ବୋଳିହୋଇ, ଗଳାରେ ରୁଦ୍ରାକ୍ଷ ଧାରଣପୂର୍ବକ, ଷଣ୍ଢ ଉପରେ ବସି ଅଗ୍ରସର ହେଲେ । ଏହିପରି ଭାବରେ ସୁସଜ୍ଜିତ ହୋଇ ଭୂତ, ପ୍ରେତ, ଶାକିନୀ, ଡାକିନୀ, ଯୋଗିନୀ, ପ୍ରମଥ, ଗୁହ୍ୟକ, କୁଷ୍ମାଣ୍ଡ, କର୍ପଟ, ବଟୁକ ଭୈରବ, ବ୍ରହ୍ମରାକ୍ଷସ, କ୍ଷେତ୍ରପାଳ, ବିନାୟକ, ଯକ୍ଷ, ରାକ୍ଷସ ଓ ଚଉଷଠୀ ଯୋଗିନୀ କଳକଳା ନାଦକରି ରଣୋନ୍ମାଦରେ ଆଗେଇ ଗଲେ । ସମସ୍ତେ ମହାଭୟଙ୍କର ନାଦକରି ଅସ୍ତ୍ରଶସ୍ତ୍ର ଘୂରାଇ ଘୂରାଇ ଆଗେଇ ଚାଲିଲେ । ଏହିପରି ଭାବରେ ଭୟଙ୍କର ଶିବଗଣ ଦକ୍ଷଙ୍କ ଯଜ୍ଞଶାଳାର ଅଦୂରରେ ପହଞ୍ଚି ଗଲେ ।

ରୁଦ୍ରଗଣ ପରାସ୍ତ ହୋଇ ପଳାଇ ଯାଆନ୍ତେ ଦକ୍ଷ ମହାଆନନ୍ଦରେ ଯଜ୍ଞକର୍ମ ଆରମ୍ଭ କରିବାରେ ଲାଗିଗଲେ । ଏତିକବେଳେ ଉତ୍ତର ଦିଗରୁ ଭୀଷଣ କୋଳାହଳ ଶୁଣାଯାଇ ଭୀଷଣ ବେଗରେ ଧୂଳିଝଡ଼ ବହିବାକୁ ଲାଗିଲା । ଏହା ଲକ୍ଷ୍ୟକରି ଯଜ୍ଞସ୍ଥଳରେ ଉପସ୍ଥିତ ଦକ୍ଷଙ୍କ ସମର୍ଥକଗଣ ଆତଙ୍କିତ ହୋଇ ଉଠିଲେ । ସମସ୍ତେ ନିଜ ନିଜର କାର୍ଯ୍ୟ ଛାଡ଼ି ସେହି ଆଡ଼କୁ ଶଙ୍କିତ ନେତ୍ରରେ ଚାହିଁ ରହିଲେ ।

ଦକ୍ଷଙ୍କ ଅନ୍ତଃପୁରରେ ମଧ୍ୟ କୋଳାହଳ ଶୁଣାଗଲା । ତା' ଦେଖି ଦକ୍ଷପତ୍ନୀ ପ୍ରସୂତି ଦେବୀ ଅତ୍ୟନ୍ତ ଦୁଃଖିତା ହୋଇ କହିଲେ—"ଏହା ଅନ୍ୟ କିଛି ନୁହେ । ଶିବଙ୍କର ମହା କୋପ ସ୍ୱରୂପ ଧାରଣକରି ସମସ୍ତଙ୍କୁ ବିନାଶ କରିବାପାଇଁ ଆସୁଅଛି । ସତୀଙ୍କ ମୃତ୍ୟୁରେ ଶିବ କ୍ରୋଧରେ ଅନ୍ଧ ହୋଇଯାଇଛନ୍ତି । ଏହି କ୍ରୋଧାଗ୍ନିରୁ ରକ୍ଷାପାଇବାର ଆଉ କୌଣସି ଉପାୟ ନାହିଁ ।

ଏହାପରେ ଆଉ ଜଣେ ସ୍ତ୍ରୀ କହିଲା—"ଆମ ମହାରାଜ କ'ଣ ସ୍ୱାମୀ'ର ପ୍ରତିକାର କରିବେ ନାହିଁକି ? ଏଇ କେତେ ସମୟ ପୂର୍ବରୁ ଦଳେ ଶିବଗଣ ଆସିଥିଲେ । ସେମାନଙ୍କୁ ଆମ

ମହାରାଜ ଘଉଡ଼ାଇ ଦେଲେ ! ଏଥର ଯେଉଁମାନେ ଆସୁଛନ୍ତି, ସେମାନେ ମଧ୍ୟ ସେହିପରି ପଳାଇ ଯିବେ ।"

ଏହା ଶୁଣି କହିଲେ ପ୍ରସୂତି ରାଣୀ—"ଏଥର ଯେଉଁମାନେ ଆସୁଛନ୍ତି, ସେମାନେ ଆଦୌ ସାମାନ୍ୟ ବୀର ବୋଲି ମନେ ହେଉନାହାନ୍ତି । ଏମାନେ ଶିବଙ୍କର ସାକ୍ଷାତ କ୍ରୋଧମୂର୍ତ୍ତି ହୋଇ ଆସୁଛନ୍ତି । ଶିବଙ୍କ କ୍ରୋଧ ଆଗରେ ସ୍ଥିର ହୋଇ ରହିବାକୁ ସାଧ୍ୟ କାହାର ? ପ୍ରଳୟ କାଳରେ ସେ ଜଟା ଖୋଲିଦେଇ, ଡମ୍ବରୁ ବଜାଇ, ତ୍ରିଶୂଳ ଉଠାଇ ଯେଉଁ ନୃତ୍ୟ କରନ୍ତି, ତାହାର ନିବାରଣ ଲାଗି ବିଶ୍ୱରେ ସାଧ୍ୟ କାହାର ? ବିଶ୍ୱନାଥଙ୍କ କୋପମୂର୍ତ୍ତି ଆଗରେ ପ୍ରଜାପତିଙ୍କ ସାଧ୍ୟ ଅବା କ'ଣ ?

ଦକ୍ଷଙ୍କ ଅନ୍ତଃପୁରରେ ସ୍ତ୍ରୀ ଲୋକମାନେ ଏ'ପ୍ରକାର ଆଲୋଚନା କରୁଥିବା ସମୟରେ ଆକାଶକୁ ମୁକୁଟ ସ୍ପର୍ଶକରୁଥିବା ବୀରଭଦ୍ର ବହୁ ଶିବଗଣଙ୍କ ସହିତ ଆସି ସେଠାରେ ପହଞ୍ଚି-ଗଲେ । ସେମାନଙ୍କ ବିକୃତ ଆକୃତି ଦେଖି ସେଠାକାର ଲୋକମାନେ ଆତଙ୍କିତ ହୋଇ ଉଠିଲେ । ସେମାନେ ମୁହୂର୍ତ୍ତକ ମଧ୍ୟରେ ଯଜ୍ଞକୁଣ୍ଡକୁ ଘେରିଗଲେ । ସେମାନଙ୍କ କଳିକଳା ରାବରେ ଗଗନ ପବନ ପ୍ରକମ୍ପିତ ହେବାକୁ ଲାଗିଲା ।

ମୈତ୍ରେୟ କହିଲେ—"ହେ ବିଦୁର, ଶିବଗଣମାନେ ଯଜ୍ଞମଣ୍ଡପକୁ ଘେରିଯିବା ମାତ୍ରେ, ସେଠାରେ ବସିଥିବା ସ୍ତ୍ରୀ, ପୁରୁଷ ଓ ପୁରୋହିତଗଣ ଥରଥର ହୋଇ କମ୍ପିବାକୁ ଲାଗିଲେ । ସମସ୍ତେ ବେଶ୍ ଅନୁଭବ କଲେ ଯେ, ଆଜି ଏ' ବିପଦରୁ ଉଦ୍ଧାର ପାଇବାର କୌଣସି ଉପାୟ ନାହିଁ । ଦକ୍ଷର ଅହଙ୍କାର ପାଇଁ ସମସ୍ତଙ୍କୁ ଦଣ୍ଡ ଭୋଗ କରିବାକୁ ପଡ଼ିବ । ଏହା ଚିନ୍ତାକରି ସେଠାରେ ବସିଥିବା ଲୋକମାନେ ପ୍ରାଣଭୟରେ ଏଣେତେଣେ ଦୌଡ଼ିବାକୁ ଲାଗିଲେ । ଯଜ୍ଞମଣ୍ଡପର ଚାରିଆଡ଼େ କୋଳାହଳ ବ୍ୟାପିଗଲା ।

## ଛପ୍ପୟ

"ଭୂତ ପ୍ରମଥ ବେତାଲ ବିନାୟକ ବଟୁକ୍ ଡାକିନୀ ।
ଗୁହ୍ୟକ, କର୍ପଟ, କ୍ଷେତ୍ରପାଲ ସଁଗ ଚଲୀଂ ସାଁକିନୀ ।।
ନବ ଦୁର୍ଗାଉ ଚଲୀଂ କୋପ କରି ଗର୍ଜତ ତର୍ଜତ ।
ବୀରଭଦ୍ର କେ ସଂଗ ନଗନ ମଗ ମର୍ଦତ ଫର୍ଦତ ।।
ବିକଟ ବେଶ ବାହନ ବିବଧ, ଭୀଷଣ କୋଲାହଲ କରହିଁ ।
ବୀରଭଦ୍ର ସେନା ନିରଖି, ନର ନାରୀ ସବହିଁ ଡରହିଁ ।।"

# ଦକ୍ଷଯଜ୍ଞ ଧ୍ୱଂସ

"ସର୍ବ ଏବର୍ତ୍ତ୍ୱିକୋ ଦୃଷ୍ଟ୍ୱା ସଦସ୍ୟାଃ ସଦିବୌକସଃ ।
ତୈରର୍ଦ୍ୟମାନାଃ ସୁଭୃଶଂ ଗ୍ରାବଭିର୍ନୈକଧାଦ୍ରବନ୍ ॥
ଜୁହ୍ୱତଃ ସ୍ରୁବହସ୍ତସ୍ୟ ଶ୍ମଶ୍ରୂଣି ଭଗବାନ୍ ଭବଃ ।
ଭୃଗୋର୍ଲୁଲୁଞ୍ଚେ ସଦସି ଯୋଽହସଚ୍ଛ୍ମଶ୍ରୁ ଦର୍ଶୟନ୍ ॥"

(ଭାଗବତ ୪।୫।୧୮ ଓ ୧୯)

## ଛପ୍ପୟ

"ଆଓ୍ୱ ଗିନ୍ୟୋ ନହିଁ ତାଓ୍ୱ ଯଜ୍ଞ କୀ ଆଗି ବୁଝାଈ ।
ଋତ୍ୱିକ ଲୀନ୍ହେ ପକରି ଧମାଧମ କରି କୁଟାଈ ॥
ଭୃଗୁକୀ ଦାଢ଼ୀ ମୂଁଛ ସଫାଚଟ କରୀ ଉଖାରୀ ।
ଭଗ କୀ ଫୋରୀ ଆଁଖି ବତୀସି ପୂଷା ଝାରୀ ॥
ପ୍ରଜାପତିନ କେ ଜଜ୍ଞ ମେଂ, ଜିନ ଜୈସେ ଶିବକୂଁ ଲଖ୍ୟୋ ।
ଦକ୍ଷଯଜ୍ଞମେଂ ତିନନି ତସ ତତ୍‌ଛିନ ତାକୋ ଫଲ ଚଖ୍ୟୋଂ ॥

ଅର୍ଥାତ୍—ମୈତ୍ରେୟ କହୁଛନ୍ତି—"ହେ ବିଦୁର, ରୁଦ୍ରପାର୍ଷଦଗଣ ଯଜ୍ଞମଣ୍ଡପରେ ଥିବା ପୁରୋହିତ, ସେବକ ତଥା ଦେବତାମାନଙ୍କ ଉପରକୁ ଖିପଣ ପଥର ବୃଷ୍ଟି କରି ଅଶେଷ କଷ୍ଟଦେବାକୁ ଲଗିଲେ । ସମସ୍ତେ ପ୍ରାଣଭୟରେ ସେଠାରୁ ପଳାୟନ କରିବାକୁ ଲଗିଲେ । ତା'ପରେ ବୀରଭଦ୍ର ଭୃଗୁଙ୍କ ଦାଢ଼ୀ ନିଶକୁ ଧରି ସଙ୍ଗେ ସଙ୍ଗେ ଉପାଡ଼ି ଦେଲେ । କାରଣ, ସେ ଦକ୍ଷଯଜ୍ଞରେ ନିଜର ଦାଢ଼ି ନିଶକୁ ହଲାଇ ଶିବଙ୍କ ନିନ୍ଦା କରୁଥିଲେ ।"

ମଣିଷ ଯେଉଁ କର୍ମ କରିଥାଏ, ତଦନୁସାରେ ଫଳଭୋଗ କରେ । ମଣିଷ ଅନ୍ୟକୁ କନ୍ଦାଇଲେ ନିଜେ ପରିଶେଷରେ କାନ୍ଦେ । ମଣିଷ ଯଦି କାହାରିକୁ ନିନ୍ଦା କରେ, ତେବେ ତାକୁ ମଧ୍ୟ ସଂସାରରେ ନିନ୍ଦିତ ହେବାକୁ ପଡ଼ିଥାଏ । ପ୍ରାସାଦ ମଧ୍ୟରେ ଯେପରି ଧ୍ୱନି କରିବ, ତଦନୁସାରେ ପ୍ରତିଧ୍ୱନି ଶୁଣାଯିବ । ଏହା ହେଉଛି ସଂସାରର ଧ୍ରୁବ ସିଦ୍ଧାନ୍ତ !

ଆଜି ଆମେମାନେ ଯାହା କିଛି କରୁଥାଉଁ, ସେ ବିଷୟରେ ସମ୍ପୂର୍ଣ୍ଣ ଭୁଲି ଯାଉଥାଉଁ; କିନ୍ତୁ ମନେ ରଖିବାକୁ ହେବ ଯେ, କୌଣସି ଏକ ଦରବାରରେ ଏହା ଠିକ୍ ଭାବରେ ଲେଖା ହୋଇ ରହୁଛି । ଅନ୍ୟକୁ ଦୁଃଖଦେବା ସମୟରେ ଆମେମାନେ ସବୁ କିଛି ଭୁଲି ଯାଉଥାଉଁ । ଆମେମାନେ ଅନ୍ଧ ଭାବରେ ଅନ୍ୟର ଦୁଃଖ ପ୍ରତି ଦୃଷ୍ଟି ନ ଦେଇ ସବୁ କିଛି କରି ଯାଉଥାଉଁ; କିନ୍ତୁ ସେହି ପାପର ଫଳ ଆମକୁ ପରେ ଭୋଗ କରିବାକୁ ପଡ଼ିଥାଏ । ସେତେବେଳେ ଆମର ଚେତା ପଶେ ।

ମୈତ୍ରେୟ କହିଲେ—"ହେ ବିଦୁର, ଦକ୍ଷପ୍ରଜାପତିଙ୍କ ଯଜ୍ଞରେ ଭୃଗୁ ଦାଢ଼ୀ ନିଶ ହଲାଇ, ଦକ୍ଷଙ୍କ 'ହଁ'ରେ 'ହଁ' ମାରି ଶିବଙ୍କୁ ନିନ୍ଦା କରିଥିଲେ । ମୁସ୍କୁରାନ୍ତ ଦେଖାଇ ଶିବଙ୍କୁ ଉପହାସ କରିଥିଲେ । ସେମାନେ ସେତେବେଳେ ତା'ର ପରିଣାମ ସମ୍ବନ୍ଧରେ ଆଦୌ ଚିନ୍ତା କରିନଥିଲେ; କିନ୍ତୁ ସେଠାରେ ଉପସ୍ଥିତ ଥାଇ ନନ୍ଦୀଶ୍ୱର ସବୁ କିଛି ଶୁଣୁଥିଲେ । ସେ ମନେ ମନେ ଭାବୁଥିଲେ—ସମୟ ଆସିଲେ ଠିକ୍ ଠିକ୍ ଭାବରେ ପରିଶୋଧ ହୋଇଯିବ । ଶିବଗଣ ଆସିବା ମାତ୍ରେ ନନ୍ଦୀଶ୍ୱର ପୁଣି ସବୁକଥା ସ୍ମରଣ କରିବାକୁ ଲାଗିଲେ ।

ରୁଦ୍ରଗଣମାନେ ଉନ୍ମତ୍ତ ହୋଇଗଲେ । ସେମାନେ ସେଠାରେ ଆଦୌ ଭଲମନ୍ଦର ବିଚାର ନ କରି ନିର୍ଭୀକ ଭାବରେ ଯଜ୍ଞମଣ୍ଡପ ଭିତରକୁ ପଶି ଭଙ୍ଗାରୁଜା କାମ ଆରମ୍ଭ କରିଦେଲେ । ସେମାନେ ଯଜ୍ଞଶାଳାର ଦ୍ୱାରଦେଶରେ ଯେଉଁ ମଣ୍ଡପଟି ନିର୍ମିତ ହୋଇଥିଲା, ତାକୁ ଭାଙ୍ଗି ଚୂରମାର କରିଦେଲେ । ତା'ପରେ ସେମାନେ ଯଜମାନଙ୍କ ପତ୍ନୀଙ୍କ ପାଇଁ ନିର୍ମିତ ଶାଳାଟିକୁ ଭାଙ୍ଗି ପକାଇଲେ । ଅନ୍ୟ କେତେକ ଶିବଗଣ ଯଜ୍ଞବେଦିକୁ ଭଙ୍ଗାଭଙ୍ଗି ଆରମ୍ଭ କରିଦେଲେ ! ଆଉ କେତେକ ରନ୍ଧନଶାଳାକୁ ପଶିଗଲେ । ସେଠାରେ ରନ୍ଧାହୋଇ ରଖାଯାଇଥିବା ବିଭିନ୍ନ ପ୍ରକାର ଖାଦ୍ୟପଦାର୍ଥକୁ ସେମାନେ ଛଡ଼ାଛଡ଼ି ହୋଇ ଖାଇ ସାରିବା ପରେ, ହାଣ୍ଡିଗୁଡ଼ିକୁ ଗୋଟିଏ ସ୍ଥାନରେ ଗୋଟା କରି ପକାଇ ଦେଲେ । ଭୂତପ୍ରେତଗଣଙ୍କୁ ଖାଇବାରେ ଲାଗିଥିବାର ଦେଖି ବୀରଭଦ୍ର ସେମାନଙ୍କୁ ସାବଧାନ କରାଇ କହିଲେ—"ଆରେ ପେଟବିକଳିଆଗୁଡ଼ାକ ତୁମେମାନେ ଯେଉଁ କାର୍ଯ୍ୟ ସାଧନପାଇଁ ଆସିଛ, ସେ କାମ ଛାଡ଼ିଦେଇ ଏଠାରେ ପେଟପୂଜାରେ କାହିଁକି ଲାଗିଛ ।

ସେମାନେ ବୀରଭଦ୍ରଙ୍କ ଚେତାବନୀ ଶୁଣି ରନ୍ଧନଶାଳାରୁ ବାହାରିଯାଇ ଯଜ୍ଞକୁଣ୍ଡରେ ମଳତ୍ୟାଗ କରିବାକୁ ଲାଗିଲେ । ସେମାନଙ୍କ ଘୃଣିତ କାର୍ଯ୍ୟ ଦେଖି, ଯଜ୍ଞଶାଳାରେ ଥିବା

ମୁନିମାନେ ଆଖି ବୁଜି ପକାଇଲେ । ତା'ପରେ ସେମାନେ ଯଜ୍ଞକୁଣ୍ଡଟିକୁ ଭାଙ୍ଗି ପକାଇଲେ । ସେଠାରେ ଥିବା ସ୍ତ୍ରୀଲୋକମାନେ ଶିବଗଣଙ୍କ ଉତ୍ପାତ ଦେଖି ବିକଳରେ କ୍ରନ୍ଦନ କରିବାକୁ ଲାଗିଲେ । ଛୋଟ ଛୋଟ ପିଲାମାନେ କ୍ରନ୍ଦନ କରିବା ସଙ୍ଗେ ସଙ୍ଗେ ଭୟଭୀତ ହୋଇ ପଡ଼ିଲେ । ଏହା ଦେଖି ବୀରଭଦ୍ର ଶିବଗଣଙ୍କୁ ଚେତାବନୀ ଶୁଣାଇ କହିଲେ—"ଦେଖ, ସ୍ତ୍ରୀ ଓ ପିଲାମାନଙ୍କ ଉପରେ କେହି ଅତ୍ୟାଚାର କରନାହିଁ । କେବଳ ଦକ୍ଷ ଓ ତା'ର ତୋଷାମଦକାରୀଙ୍କୁ ମଜା ଚଖାଇବାରେ ଢିଲେଢ଼ିଲେ ହେଲା କରିବନାହିଁ ।"

ଏତିକି ଶୁଣିବାମାତ୍ରେ ଶିବଗଣମାନେ ମୁନି ଓ ବ୍ରାହ୍ମଣମାନଙ୍କ ଉପରେ ତୀବ୍ର ଆକ୍ରମଣ ଆରମ୍ଭ କରିଦେଲେ । ମଣିମାନ୍ ନାମକ ଶିବଗଣ ଭୃଗୁଙ୍କୁ ଦେଖି ତାଙ୍କ ଦାଢ଼ୀ ଓ ଜଟ ଝିଙ୍କାଇ ତାଙ୍କୁ ହଲପଟା କରିବାକୁ ଲାଗିଲେ । ଏହା ଦେଖି ଭୃଗୁ ବିସ୍ମିତ ସ୍ୱରରେ କହିଲେ—"ଆରେ, ଏ କଣ କରୁଛ ? ମୁଁ ଏହି ଯଜ୍ଞର ପ୍ରଧାନ ଆଚାର୍ଯ୍ୟ । ମୋ ପ୍ରତି ଏପରି ଅସଭ୍ୟ ବ୍ୟବହାର କରିବା ଠିକ୍ ନୁହେଁ ।"

ମଣିମାନ୍ ଗମ୍ଭୀର ହୋଇ ଯାଇ କହିଲା—"ଆଚ୍ଛା, ଆପଣ ଏ ଯଜ୍ଞର ପ୍ରଧାନ ପୁରୋହିତ ? ମୁଁ ତ ଅନେକ ବେଳରୁ ଆପଣଙ୍କୁ ଖୋଜୁଥିଲି । ଆପଣଙ୍କୁ ଦକ୍ଷିଣା ନ ଦେଇ ଛାଡ଼ିଦେବି କିପରି ?" ଏହା କହି ସେ ଭୃଗୁଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେବାରୁ, ନନ୍ଦୀଶ୍ୱର କହିଲେ—"ଆରେ···ରେ···, ଏ କଣ କରୁଛ ? ବ୍ରହ୍ମହତ୍ୟା କରନାହିଁ ।"

ସେ ଭୃଗୁଙ୍କୁ ଧରି କହିଲେ—"ଆଚ୍ଛା, ତୁମେ ଦକ୍ଷଙ୍କ 'ହଁ'ରେ 'ହଁ' ମିଶାଇ ଶିବଙ୍କୁ ନିନ୍ଦା କରୁଥିଲ ନା ?" ଏହା କହି ତାଙ୍କୁ ସେହିଠାରେ ବାନ୍ଧି ପକାଇଲେ । ଯ୍ୱା' ମଧ୍ୟରେ ଚଣ୍ଡୀଶ ପୂଷାଙ୍କୁ ଘୋଷାରି ଘୋଷାରି ଆଣି ସେହିଠାରେ ଭୃଗୁଙ୍କ ସହିତ ବାନ୍ଧି ପକାଇଲେ ।

ବୀରଭଦ୍ର ଦକ୍ଷପ୍ରଜାପତିଙ୍କୁ ଖୋଜୁଥିଲେ; କାରଣ, ଦକ୍ଷପ୍ରଜାପତିଙ୍କୁ ହତ୍ୟା କରିବା ପାଇଁ ଶିବ ତାଙ୍କୁ ଆଦେଶ ଦେଇଥିଲେ । ଦକ୍ଷ ଯ୍ୱା'ମଧ୍ୟରେ ଋଷିଗଣଙ୍କ ମଧ୍ୟରେ ପ୍ରାଣଭୟରେ ଲୁଚି ଯାଇଥିଲେ । ବୀରଭଦ୍ର ମୁନିମାନଙ୍କ ମଧ୍ୟରେ ଲୁଚିଥିବା ଦକ୍ଷର ବେକ ଧରି ଧକ୍କା ଦେଇ କହିଲେ—"କୁଆଡ଼େ ଲୁଚିଥିଲୁ ଶୈତାନ ଏଥର ଯଜ୍ଞ କରିବାର ଫଳ ତୋତେ ଭୋଗିବାକୁ ପଡ଼ିବ ।"

ଏହା କହି ବୀରଭଦ୍ର ଦକ୍ଷଙ୍କ ବେକରେ ଦଉଡ଼ି ବାନ୍ଧି ତାଙ୍କୁ ଯଜ୍ଞପଶୁପରି ଘୋଷାରି ଘୋଷାରି ମୁନିମଣ୍ଡଳୀ ମଧ୍ୟରୁ ନେଇ ଆସିଲେ ।

ଏତିକିବେଳେ ବୀରଭଦ୍ର ଲକ୍ଷ୍ୟକଲେ—ଦୂରରେ ମଣିମାନ୍ ଓ ନନ୍ଦୀଶ୍ୱର ଦୁହେଁ ବାଦବିବାଦରେ ଲାଗିଛନ୍ତି । ବୀରଭଦ୍ର ଦକ୍ଷଙ୍କୁ ଘୋଷାରି ଘୋଷାରି ନେଇ ସେ ଦୁହିଙ୍କ ନିକଟରେ ପହଞ୍ଚିଲେ । ସେ ଦୁହିଙ୍କ ବିବାଦକୁ ମେଣ୍ଟାଇ ଦେଇ, ସେ ଭୃଗୁଙ୍କ ଦାଢ଼ୀ, ଜଟ ଛିଣ୍ଡାଇ ଦେବାକୁ ଆଜ୍ଞା ଦେଲେ । ଏତିକିବେଳେ କହିଲେ ନନ୍ଦୀଶ୍ୱର—"ବୀରଭଦ୍ର

ମହୋଦୟ, ଏ ଭୃଗୁ ଜଣେ କମ୍ ଦୁଷ୍ଟ ନୁହେ । ଏ' ଆଖି ନଚାଇ ମୁଖଭଙ୍ଗି କରି ଶିବଙ୍କୁ ନିନ୍ଦା କରୁଥିଲା । ଏହାକୁ ଉଚିତ ଦଣ୍ଡ ଦିଆଯିବା ଉଚିତ ।"

ଏହା ଶୁଣିବା ମାତ୍ରେ ବୀରଭଦ୍ର ଭୃଗୁଙ୍କୁ ତଳେ ମାଡ଼ିବସି ତାଙ୍କ ଆଖି ଦୁଇଟିକୁ ଫୁଟାଇ ଦେଲେ । ଏହି ସମୟରେ ଚଣ୍ଡୀଶ ପୂଷାଙ୍କୁ ଘୋଷାରି ଘୋଷାରି ଆଣି ବୀରଭଦ୍ରଙ୍କ ଗୋଡ଼ ତଳେ ପକାଇ କହିଲା—"ଏ' ମଧ୍ୟ କମ୍ ଦୁଷ୍ଟ ନୁହେ । ଏ' ଦାନ୍ତ ଦେଖାଇ ଶିବଙ୍କୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ଅଟ୍ଟହାସ କରୁଥିଲା ।"

ଏହା ଶୁଣିବା ମାତ୍ରେ ବୀରଭଦ୍ର ଗୋଟିଏ ଗୁଡ଼ୁଡ଼ା ମାରି ପୂଷାର ଦାନ୍ତତକ ଝଡ଼ାଇ ଦେଲେ । ଶେଷକୁ ଦକ୍ଷଙ୍କ ପାଳି ପଡ଼ିଲା । ବୀରଭଦ୍ର ଗର୍ଜିଉଠି କହିଲେ—"ବନ୍ଧୁଗଣ, ବ୍ରାହ୍ମଣ ଅବଧ୍ୟ ହେଲେ ହେଁ ମୁଁ ଦକ୍ଷକୁ ବଧ ନକରି ଛାଡ଼ିବି ନାହିଁ । ଏହାରି ଅପମାନଜନକ ବାକ୍ୟବାଣରେ ମାତା ସତୀ ଆତ୍ମହତ୍ୟା କରିଛନ୍ତି । ଏ' ସଦାଶିବଙ୍କୁ ନିନ୍ଦା କରି ନିଜର ବଡ଼ପଣର ବାହାଦୁରୀ ଦେଖାଇଛି । ତା'ପରେ ଏ' ଚଣ୍ଡାଳ ଯଜ୍ଞରେ ଶିବଙ୍କୁ ଯଜ୍ଞଭାଗ ନ ଦେଇ ଏକ ଅହଙ୍କାରପୂର୍ଣ୍ଣ ଯଜ୍ଞ କରି କେବଳ ଶିବଙ୍କୁ ନୁହେ, ସମସ୍ତ ଦେବତାଙ୍କୁ ଅପମାନିତ କରିଛି । ତେଣୁ ଏହି ଚଣ୍ଡାଳକୁ ବଧ କରିବା ନିମନ୍ତେ ମୋତେ ମହାପ୍ରଭୁ ସଦାଶିବ ଆଜ୍ଞା ଦେଇଛନ୍ତି ।"

ଏହା ଶୁଣି ଶିବଗଣମାନେ ଆନନ୍ଦରେ ନୃତ୍ୟ କରି କହିଲେ—"ଏହାକୁ ସମୁଚିତ ଦଣ୍ଡ ଦିଅନ୍ତୁ । ଏହାରି କୁକୃତ୍ୟ ପାଇଁ ମାତା ସତୀ ପ୍ରାଣତ୍ୟାଗ କରିଛନ୍ତି । ଏହା ପ୍ରତି ଦୟା ପ୍ରଦର୍ଶନ କରିବା ଘୋରତର ଅପରାଧ ।"

ଏହା ଶୁଣି ବୀରଭଦ୍ର ଦକ୍ଷର ଛାତି ଉପରେ ବସିପଡ଼ି, ତା'ର ମୁଣ୍ଡ କାଟିବାକୁ ଲାଗିଲେ; କିନ୍ତୁ ଦକ୍ଷଙ୍କ ଦେହରେ କୌଣସି ଅସ୍ତ୍ର ଭେଦ କରି ପାରିଲାନାହିଁ । ଶେଷରେ ସେଠାରେ ପଡ଼ିଥିବା ଯଜ୍ଞଦ୍ୱାରା ମନ୍ତ୍ରିତ କୁଠାରରେ ଦକ୍ଷର ଶିରଚ୍ଛେଦ କରି ଅଗ୍ନିକୁଣ୍ଡରେ ପକାଇଦେଲେ । ଅଗ୍ନିକୁଣ୍ଡରେ ଦକ୍ଷର ଶିର ଭସ୍ମ ହେଉଥିବାର ଲକ୍ଷ୍ୟ କରି ଶିବଗଣମାନେ କିଳିକିଳା ନାଦ କରି ନୃତ୍ୟ କରିବାକୁ ଲାଗିଲେ । ଦକ୍ଷର ଗଣ୍ଡିରୁ ବାହାରୁଥିବା ରକ୍ତ ଯୋଗିନୀମାନେ ପାନ କରି ଉନ୍ମତ୍ତ ହୋଇ ଉଠିଲେ ।

ଅଗ୍ନିଙ୍କ ପତ୍ନୀ ସ୍ୱାହା ଓ ପିତରଙ୍କ ପତ୍ନୀ ସ୍ୱଧା ଯଜ୍ଞସ୍ଥାନରୁ ପ୍ରାଣ ଘେନି ପଳାଇ ଗଲେ । ଦେବତାମାନେ ଶିବଗଣଙ୍କ ଉତ୍ପାତରେ ନିଜ ନିଜ ଅସ୍ଥାନକୁ ଚାଲିଗଲେ । ପିତରମାନେ ମଧ୍ୟ ଅତୃପ୍ତ ଅବସ୍ଥାରେ ସେ ସ୍ଥାନ ଛାଡ଼ି ପିତୃଲୋକକୁ ଗମନ କଲେ । ବ୍ରାହ୍ମଣମାନେ ସ୍ରୁବ ସ୍ରୁଚ ଓ ବେଦପୋଥି ଛାଡ଼ିଦେଇ ଭୟରେ ପଳାଇଗଲେ । ସ୍ତ୍ରୀମାନେ ଶିବଗଣଙ୍କଠାରୁ ଅଭୟ ବାଣୀ ଶୁଣିଥିଲେ ମଧ୍ୟ ସେମାନଙ୍କ ଉତ୍ପାତ ଦେଖି ଅନ୍ତଃପୁରକୁ ପଳାଇଯାଇ ଲୁଚିଲେ ।

ଦକ୍ଷର ଶିର ପୋଡ଼ି ପାଉଁଶ ହୋଇଯିବା ପରେ, ବୀରଭଦ୍ର କହିଲେ—"ବନ୍ଧୁଗଣ, ଏଥର ଆମ ଯଜ୍ଞ ଶେଷ ହୋଇଗଲା । ଏଥର ଶୀଘ୍ର ଯାଇ ଭଗବାନ୍ କୈଳାସପତିଙ୍କ ଚରଣ ଧୂଳି ଅଙ୍ଗରେ ବୋଳି ହୋଇ ଗଙ୍ଗାରେ ସ୍ନାନ କରିବା ।" ଏହା କହି ଯଜ୍ଞସ୍ଥଳର ସମସ୍ତ ଦ୍ରବ୍ୟକୁ ଏକତ୍ରିତ କରି ସେଥିରେ ନିଆଁ ଲଗାଇଦେଲେ ।

ମୈତ୍ରେୟ କହିଲେ—"ହେ ବିଦୁର, ବୀରଭଦ୍ରଙ୍କଠାରୁ ଦକ୍ଷଯଜ୍ଞ ବିଧ୍ୱଂସନର ସମ୍ବାଦ ପାଇ ଶିବ ସନ୍ତୋଷ ଲଭିଲେ; କିନ୍ତୁ ସତୀଙ୍କ ମୃତ୍ୟୁରେ ସେ କ୍ରୋଧ ସମ୍ବରଣ କରିପାରିଲେ ନାହିଁ ।

## ଛପ୍ପୟ

"ସବତେଂ ପୀଛେ ଶମ୍ଭୁ ସୁର କୀ ବାରୀ ଆଈ ।
ବୀରଭଦ୍ର ନେ ପଟକ ଦକ୍ଷ ପୈ ଖଡ଼୍‌ଗ ଚଲାଈ ।।
କିନ୍ତୁ ନ ମାର୍ୟୋ ମରୈ ସବନକୁଁ ଚିନ୍ତା ବ୍ୟାପୀ ।
କୌନ ଯତନ ତେଂ ମରୈ ସତୀ ଘାତୀ ଜିହ୍ୱ ପାପୀ
ସହସା ସୂଝୀ ଯୁକ୍ତି ଇକ, ବଲି ପଶୁ ସମ ସିର ମୋରିକେଂ ।
ଫେଂକ୍ୟୋ କରତୀ ଅଗିନ ମେଂ ଧଡ଼ତେଂ ସିର କୁଁ ତୋରିକେଂ ।।"



## ଜଗତ୍ ଶିବଙ୍କ ଲୀଳାସ୍ଥଳୀ

"ବିଦ୍ୟାତପୋବ୍ରତଧରାନ୍ ମୁଖତଃ ସ୍ମ ବିପ୍ରାନ୍ ।
ବ୍ରହ୍ମାସୃଜତ୍ତ୍ୱମବିତୁଂ ପ୍ରଥମଂ ତ୍ୱମସ୍ରାକ୍ ॥
ତଦ୍ ବ୍ରହ୍ମଣାନ୍ ପରମ ସର୍ବ ବିପତ୍ସୁ ପାସି ।
ପାଲଃ ପଶୂନିବ ବିଭୋ ପ୍ରଗୃହୀତଦଣ୍ଡଃ ॥"

(୨୦୩) (ଭାଗବତ ୪।୬।୧୪)

ଛପ୍ପୟ

"ଶୌନକ ପୂଛେଁ ସୂତ ! କଲହ କୋ ବୀଜ ବତାଓ ।
ମାନେୟା କସ ଶିବ ବୈର ଦକ୍ଷ ନେ ସୋ ସମୁଝାଓ ॥
ସୂତ କହେଁ—ମୁନି ! କଲହ କାମନା ତେଂ ଈ ହୋଵେ ।
କାମ କ୍ରୋଧ ତୈଂ ଉପଜି ସୁମତି ସଦ୍‌ଗୁନ ସବ୍ ଖୋଵେ ॥
ବିଧି ତେଂ ଉପଜ୍ୟୋ କାମ ଜବ, କାମାତୁର ଋଷି ମୁନି ଭୟେ ।
ବରଜେ ଜବ ଶ୍ରୀ ଶମ୍ଭୁ ନେ, ତବ ସବ ଲଜ୍ଜିତ ହ୍ୱୈ ଗୟେ ॥"

ଅର୍ଥାତ୍ – ବିଶୁଦ୍ଧ ଭାବରେ ଦକ୍ଷ ଶିବଙ୍କୁ ସ୍ତୁତି କରି କହିଲେ—"ବିଭୋ, ଆପଣ ବିଦ୍ୟା, ତପ ତଥା ବ୍ରତକୁ ଧାରଣ କରିଥିବା ବ୍ରାହ୍ମଣମାନଙ୍କୁ ନିଜ ମୁଖରୁ ସୃଷ୍ଟି କରିଛନ୍ତି । ସେହି ବ୍ରାହ୍ମଣମାନେ ବେଦ ଓ ଆତ୍ମତତ୍ତ୍ୱକୁ ରକ୍ଷା କରୁଛନ୍ତି । ଆପଣ ସେମାନଙ୍କୁ ସର୍ବସ୍ୱ ଭାବରେ ଦଣ୍ଡ ଦିଅନ୍ତିନାହିଁ । ତଥାପି ଗୋପାଳ ହାତରେ ଦଣ୍ଡ ଧାରଣ କରି, ଗୋରୁମାନଙ୍କୁ ରକ୍ଷା କଲାପରି, ଆପଣ ବ୍ରାହ୍ମଣମାନଙ୍କୁ ଦଣ୍ଡ ଦେଇ ବିପଦରୁ ରକ୍ଷା କରନ୍ତି ।"

ନିର୍ବିକାର ଓ ନିର୍ଲେପ ବ୍ରହ୍ମାଙ୍କଠାରେ ସୃଷ୍ଟିରେ ସମ୍ଭାବନା କରାଯାଇ ପାରେନାହିଁ । ଯେତେବେଳେ ସେ ନିର୍ଗୁଣ ସ୍ୱରୂପରୁ ସଗୁଣରେ ପରିଣତ ହୁଅନ୍ତି, ସେତେବେଳେ ଜୀବର ଭୋଗ ନିମିତ୍ତ ବା କ୍ରୀଡ଼ା ନିମିତ୍ତ ଭକ୍ତମାନଙ୍କ ଉପରେ ଅନୁଗ୍ରହ କରି ଏହି ବିଶ୍ୱର ରଚନା କରନ୍ତି । ଯଦି ଏହି ସୃଷ୍ଟିରେ ସମସ୍ତେ ସନକ, ସନତ୍କୁମାର ଓ ସନନ୍ଦନ ସ୍ୱରୂପ ହୁଅନ୍ତି, ତେବେ ସୃଷ୍ଟିର ପ୍ରକ୍ରିୟା ଚାଲିବ କିପରି ? କାମନା ବିନା ସୃଷ୍ଟି ହୋଇ ପାରେନାହିଁ । ଏଣୁ ସୃଷ୍ଟିଚକ୍ର ଚଳାଇବା ପାଇଁ ବ୍ରହ୍ମାଙ୍କ ମନରେ ବିକାର ଉତ୍ପନ୍ନ ହୋଇଥାଏ । ଅବଶ୍ୟ ବ୍ରହ୍ମା ବିକାରୀ ନୁହନ୍ତି: ସେ ନିର୍ବିକାର । ସେ ସୃଷ୍ଟି, ସ୍ଥିତି ଓ ପ୍ରଳୟ ପାଇଁ ତ୍ରିଗୁଣାତ୍ମକ ରୂପ ଧାରଣ କରନ୍ତି । ସେତିକିବେଳେ ଭ୍ରମବଶତଃ ତାଙ୍କୁ ବିକାରୀ ବୋଲି ଧାରଣା କରାଯାଏ । ଅବଶ୍ୟ ତାଙ୍କଠାରେ କୌଣସିମତେ ବିକାରର ଆରୋପ କରାଯାଇ ପାରେନାହିଁ । ନଇଲେ ଶିବଙ୍କ ପରି ନିର୍ବିକାର ପୁରୁଷଙ୍କଠାରେ କୋପ, ରାଗ, ଦ୍ୱେଷ ସମ୍ଭବ ହୁଅନ୍ତା କିପରି ?

ଏହା ଶୁଣି ଶୌନକ ସୂତଙ୍କୁ ପଚାରିଲେ—"ହେ ମହାଶୟ, ଶିବ ସାଧାରଣ ବିକାରୀ ମନୁଷ୍ୟଙ୍କ ପରି ଲୀଳା ପ୍ରକଟ କଲେ କାହିଁକି ? ଶକ୍ତି ସ୍ୱରୂପା ସତୀ ଦକ୍ଷପୁତ୍ରୀଙ୍କୁ ପିତାପାଇଁ ଏତେ କ୍ରୋଧ ପ୍ରକାଶ କଲେ ବା କାହିଁକି ? ଯଦିଓ ସତୀ ସେଠାକୁ ଗଲେ ସେ ଆତ୍ମହତ୍ୟା କଲେ କିପରି ? ଶିବ ଶାନ୍ତ ସ୍ୱରୂପ; ସେ ସତୀଙ୍କ ହତ୍ୟା ଶୁଣି ଏପରି କ୍ରୋଧ ପ୍ରକାଶ କଲେ କାହିଁକି ? ସେ ବୈଦିକ ଯଜ୍ଞର ବିଧ୍ୱଂସ କରିବାରେ ମନ ବଳାଇଲେ କିପରି ? ଏହା ମୂଳରେ କ'ଣ କେଉଁ ପ୍ରାଚୀନ କଳହ ନିହିତ ଥିଲା କି ?"

ଏହା ଶୁଣି ସୂତ ହସି ଦେଇ କହିଲେ—"ମହାଭାଗ, ଶିବଙ୍କ ପାଇଁ କୌଣସି ବିଷୟ ନୂତନ ନୁହେଁ, ସବୁ କିଛି ପୁରୁଣା । ସେ ନିଜର ବିନୋଦ ପାଇଁ ଏହା କରିଛନ୍ତି । ପିଲାଟିଏ ଦର୍ପଣରେ ନିଜ ମୁଖ ଦେଖି ପ୍ରତିବିମ୍ବକୁ ଝଗଡ଼ା କରିଇ ହୁଏ ଏବଂ ସେହି ପ୍ରତିବିମ୍ବ ଆଡ଼କୁ ବାଧା, ଗୁପୁଡ଼ା ଉଞ୍ଚାଇଥାଏ । ଅନେକ ସମୟ ପର୍ଯ୍ୟନ୍ତ ପିଲାଟି ଦର୍ପଣ ସହିତ ଏପରି ଭାବରେ କ୍ରୀଡ଼ାରେ ମତ୍ତ ହୋଇଥାଏ । ତା' ପରେ ପିଲାଟି ଦର୍ପଣକୁ ତଳେ କଚାଡ଼ି ଦେଇ ତାକୁ ଚୁରମାର କରି ଦେଇ, ପୁଣି ନିଜ ଖେଳରେ ମାତିଯାଏ । ଏହିପରି ଭାବରେ ଦେଖିବାକୁ-ଗଲେ ଏହି ବିଶ୍ୱବ୍ରହ୍ମାଣ୍ଡ ପ୍ରଭୁଙ୍କର ଦର୍ପଣ ସ୍ୱରୂପ । ସେ ତାହାକୁ ନେଇ କ୍ରୀଡ଼ା କରନ୍ତି । ଶିବଙ୍କର ସମ୍ପୂର୍ଣ୍ଣ ଲୀନ ହେବାକୁ ସାଧାରଣ ବ୍ୟକ୍ତିର ସାମର୍ଥ୍ୟ ବା କେତେ ? ସେ ସ୍ୱୟଂ ସମ୍ପୂର୍ଣ୍ଣ ପରି ଅନେକ କିଛି କରିଥାଆନ୍ତି । ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ, ଲୁହାର ଅନେକ ଜିନିଷ ରହିଛି, ସେହି ଲୁହା କଇଁଚ ଓ ଛେଣିରେ କଟାଯାଇ ପାରେ । ପୁଣି ସେହି ଲୁହାରେ ଗ୍ରୁଣ୍ଡ ବନାଇ ସେଥିରୁ ଅନେକ ଜିନିଷ ଲୁହାରେ ତିଆରି କରାଯାଏ । ପରିଶେଷରେ ଯେଉଁ ଲୁହାକୁ ସେହି ଲୁହା ! ଏହିପରି ଭାବରେ ଶିବ ଭିନ୍ନ ଭିନ୍ନ ରୂପ ହେଉଛନ୍ତି— ବ୍ରହ୍ମା, ମନୁ, ପ୍ରଜାପତି ଆଦି । କ୍ରୀଡ଼ାପାଇଁ ସେ ଅନେକ ରୂପ ଧାରଣ କରନ୍ତି । ଲୋକମାନେ ସେହି ଚରିତକୁ ଆନନ୍ଦରେ ଶ୍ରବଣ କରନ୍ତି । ତେଣୁ ବିଷୟୀ

ଲୋକମାନେ ଶିବଙ୍କ ସମ୍ବନ୍ଧରେ ନାନା ପ୍ରକାର ଆଖ୍ୟାୟିକା ଶୁଣି ସେ ବିଷୟରେ ଚର୍ଚ୍ଚା ଆରମ୍ଭ କରନ୍ତି ।

"ଆପଣ ଯେଉଁ ବିରୋଧ ସମ୍ବନ୍ଧରେ ପ୍ରଶ୍ନ ଉଠାଇଛନ୍ତି; ତା'ର ମଧ୍ୟ ଅନେକ କାରଣ ରହିଛି । କାରଣ ହେଉଛି—ଶିବ ଏହି ବିଶ୍ୱର ରଚନା କରି, ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଏହି ତିନି ରୂପ ସୃଷ୍ଟି କଲେ । ବ୍ରହ୍ମା ରୂପରେ ସେ ଦେବ-ଦାନବ, ଯକ୍ଷରାକ୍ଷସ; ପଶୁପକ୍ଷୀ, ଲତାବୃକ୍ଷ ଆଦି ଜୀବଜଗତର ନବଧା ସୃଷ୍ଟି କଲେ । ନିଜ ସନକାଦିଙ୍କ ବ୍ୟତୀତ ମରୀଚି ଆଦି ଦଶଜଣ ମାନସ ପୁତ୍ରଙ୍କୁ ସୃଷ୍ଟି କରିଥିଲେ । ପ୍ରଜା ସୃଷ୍ଟି କରିଥିବାରୁ, ସେ ପ୍ରଜାପତି ନାମରେ ପ୍ରସିଦ୍ଧ ହେଲେ । ପ୍ରଜା ବୃଦ୍ଧି ଆଶାନୁରୂପ ନ ହେବାରୁ, ତାଙ୍କ ଦୁଇ ଭ୍ରୂର ମଧ୍ୟଭାଗରୁ ରୁଦ୍ର ରୂପ ସୃଷ୍ଟି ହେଲା । ତଥାପି କାହାର ମନରେ ପ୍ରଜା ସୃଷ୍ଟି ପାଇଁ ଇଚ୍ଛା ଜାତ ହେଲାନାହିଁ । ତା'ପରେ ବ୍ରହ୍ମା ପ୍ରସନ୍ନ ଚିତ୍ତରେ ଭାବିଲେ—"କିପରି ସମସ୍ତଙ୍କ ମନରେ ପ୍ରଜା ସୃଷ୍ଟି ଲାଗି ଆଗ୍ରହ ଜାତ ହେବ । ଏହିକଲେଲେ ତାଙ୍କ ଶରୀରରୁ ବିଶ୍ୱ-ମୋହିନୀ ସନ୍ଧ୍ୟାଦେବୀଙ୍କ ଜନ୍ମ ସମ୍ଭବ ହେଲା । ତା'ପରେ ପରେ ଆଉ ଗୋଟିଏ ବିଶ୍ୱମୋହନ ପୁରୁଷ ଜାତ ହେଲା । ସେହି ପୁରୁଷଙ୍କର ସୌନ୍ଦର୍ଯ୍ୟ ଦେଖି, ସମସ୍ତଙ୍କ ମନରେ କାମନା ଉତ୍ପନ୍ନ ହେଲା । ସେ କୁସୁମାୟୁଧ ହୋଇ ଜନ୍ମ ଗ୍ରହଣ କରିଥିଲା । ସେ ଜନ୍ମହେବା କ୍ଷଣି ହାତଯୋଡ଼ି କହିଲା—"ଆପଣ ମୋତେ କାହିଁକି ଉତ୍ପନ୍ନ କଲେ ? ମୋର ନାମ କଣ ? ମୋର କାର୍ଯ୍ୟ କ'ଣ ? ମୋତେ ମଧ୍ୟ ଗୋଟିଏ ସହଚରୀ ପ୍ରଦାନ କରନ୍ତୁ ।"

ତା'ଠାରୁ ଏହା ଶୁଣି ପାଖରେ ବସିଥିବା ପ୍ରଜାପତିମାନଙ୍କୁ ନବଜାତ କୁମାରର ନାମକରଣ କରିବାକୁ ବ୍ରହ୍ମା ଆଦେଶ ଦେଲେ । ଋଷିମାନେ ବ୍ରହ୍ମାଙ୍କ ଆଦେଶ ଅନୁସାରେ ପୁତ୍ରର ନାମକରଣ କରିବାକୁ ଯାଇ କହିଲେ—"ଜନ୍ମ ହେବାମାତ୍ରେ ଏ ବାଳକ ସମସ୍ତଙ୍କ ମନକୁ ମଥନ କରିଥିବାରୁ ଏହାର ନାମ 'ମନ୍ମଥ' ହେଉ । ଏହାକୁ ଦେଖିବାମାତ୍ରେ ମନରେ କାମନା ଜାତ ହୋଇଥିବାରୁ ଏହାର ଅନ୍ୟ ନାମ ହେବ 'କାମ' । ଏହାର ହାତରେ କୁସୁମ ଧନୁ ଥିବାରୁ ପୁତ୍ରର ତୃତୀୟ ନାମ 'କୁସୁମାୟୁଧ' ହେବ ।

ଏହା ଶୁଣି ବ୍ରହ୍ମାଜୀ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ତୁମେ ସଂସାରରେ ସର୍ବଶ୍ରେଷ୍ଠ ସୁନ୍ଦର ହେବ । ତୁମର ପ୍ରଭାବ ସମସ୍ତ ପ୍ରାଣୀଙ୍କ ଉପରେ ପଡ଼ିବ । କେବଳ ମର୍ତ୍ତ୍ୟର ପ୍ରାଣୀମାନେ ନୁହନ୍ତି, ତୁମର ପ୍ରଭାବରେ ସ୍ୱର୍ଗର ଦେବତାମାନେ ମଧ୍ୟ ପ୍ରଭାବିତ ହେବେ । ତୁମେ ସମସ୍ତ ସ୍ତ୍ରୀ ପୁରୁଷଙ୍କଠାରେ ସମାନ ଭାବରେ ପ୍ରଭାବ ବିସ୍ତାର କରିବ । ପୁରୁଷ ସ୍ତ୍ରୀମାନଙ୍କୁ ଦେଖି ଓ ସ୍ତ୍ରୀମାନେ ପୁରୁଷମାନଙ୍କୁ ଦେଖିବାମାତ୍ରେ ତୁମର ଅଧୀନ ହୋଇଯିବେ । ତୁମର ଫୁଲବାଣ ଆଗରେ କାହାର ଧୈର୍ଯ୍ୟ ରହିବନାହିଁ ।

ଏହା ଶୁଣିବା ମାତ୍ରେ କାମଦେବ ନିଜର ପୁରୁଷାର୍ଥ ସମ୍ବନ୍ଧରେ ପରୀକ୍ଷା କରିବା ପାଇଁ ବ୍ରହ୍ମା ଓ ଅନ୍ୟ ପ୍ରଜାପତିମାନଙ୍କ ଉପରେ ଶରସନ୍ଧାନ କରିବାକୁ ଲାଗିଲେ ।

ମନ୍ମଥ ଉଦ୍ଭାସର ପରେ ବରଦାତାଙ୍କ ଉପରେ ପରୀକ୍ଷା ଆରମ୍ଭ କରିଦେଲେ । ବ୍ରହ୍ମାଙ୍କ ନିକଟରେ ସନ୍ଧ୍ୟାଦେବୀ ଠିଆ ହୋଇଥିଲେ । ବ୍ରହ୍ମାଙ୍କ ବର ଅନ୍ୟଥା ହେବାର କଥା ନୁହେଁ । ତେଣୁ ବ୍ରହ୍ମାଙ୍କ ମନରେ ବିକାର ଜାତ ହେଲା ଏବଂ ପ୍ରଜାପତିମାନେ ମଧ୍ୟ ନିର୍ବିକାର ରହି ପାରିଲେ ନାହିଁ । ସନ୍ଧ୍ୟା ମଧ୍ୟ ସ୍ଥିର ହୋଇ ରହିପାରିଲେ ନାହିଁ । ଏହା ଲକ୍ଷ୍ୟ କରି ମନ୍ମଥ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଶିବ ଏକାକୀ ବିକାରଶୂନ୍ୟ ହୋଇ ରହିଲେ । ସେ ସମସ୍ତଙ୍କୁ ଧର୍ମପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ—"ପ୍ରଜାପତି, ଆପଣଙ୍କ ମନରେ ଏପରି ବିକାର ଜାତ ହେବା ଅତ୍ୟନ୍ତ ଲଜ୍ଜାର ବିଷୟ । ଏହା ଶୁଣି ସେମାନେ ଅତ୍ୟନ୍ତ ଲଜ୍ଜିତ ହେଲେ ଏବଂ ଶିବଙ୍କ ଉପରେ ମନେ ମନେ ବିରକ୍ତ ହେବାକୁ ଲାଗିଲେ ।

କାମର ପ୍ରଭାବ ଉପଶମ ହୋଇ ଯାଆନ୍ତେ, ସମସ୍ତେ ପୂର୍ବପରି ନିର୍ମଳ ସ୍ୱଭାବର ହୋଇଥିଲେ । ବ୍ରହ୍ମା କାମଦେବ ଉପରେ ରାଗିଯାଇ ତାଙ୍କୁ ଅଭିଶାପ ଦେଇ କହିଲେ— "ତୁ ଦିନେ ଏହି ଶିବଙ୍କ କୋପାନଳରେ ଭସ୍ମ ହେବୁ !"

କାମଦେବ ଅତ୍ୟନ୍ତ ଦୁଃଖିତ ହୋଇ କହିଲେ—"ମହାତ୍ମନ୍, ଏଥିରେ ମୋର ଦୋଷ କେଉଁଠି ରହିଲା ? ଆପଣ ମୋତେ ବରଦାନ ଦେଇ ମୋର ଶକ୍ତି ଓ ସାମର୍ଥ୍ୟ ବଢ଼ାଇଛନ୍ତି । ଏହା ମୋ ପ୍ରତି ସାଂଘାତିକ ଅନ୍ୟାୟ ।"

ଏହା ଶୁଣି ବ୍ରହ୍ମା ପ୍ରଶାନ୍ତ ଚିତ୍ତରେ କହିଲେ—"ଠିକ୍ ଅଛୁ, ମୋର ବରଦାନ ଏବଂ ଅଭିଶାପ କୌଣସିଟି ବୃଥା ହେବନାହିଁ । ତୁମେ ଶିବଙ୍କ କୋପାନଳରେ ଭସ୍ମ ହେଲେ ମଧ୍ୟ ତୁମର ପ୍ରଭାବ ଅକ୍ଷୁଣ୍ଣ ରହିବ । ତୁମେ ଅନଙ୍ଗ ହୋଇ ମଧ୍ୟ ସମସ୍ତଙ୍କୁ ପୀଡ଼ା ଦେବାରେ ସକ୍ଷମ ହେବ । ପରେ ତୁମେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଔରସରେ ଜନ୍ମ ହୋଇ ଶାପରୁ ମୁକ୍ତ ହେବ ।"

ତା'ପରେ କହିଲା କାମଦେବ—"ପ୍ରଭୋ, ମୁଁ କାମିନୀ ବିନା ଏକାକୀ କ'ଣ କରି ପାରିବି ?"

ତା'ପରେ ବ୍ରହ୍ମା ନିଜର ଝାଳରୁ ଗୋଟିଏ ପରମାସୁନ୍ଦରୀ କନ୍ୟା ଜାତ କରାଇଲେ । ମୁନିମାନେ ତା'ର ନାମକରଣ କଲେ—'ରତି' । ସେମାନେ ମିଳିତ ହୋଇ କାମଦେବ ସହିତ ରତିର ବିବାହ ସମ୍ପନ୍ନ କଲେ । ସେହି ଯୁଗଳ ଦମ୍ପତି ସଂସାରରେ ଅତ୍ୟନ୍ତ ସୁନ୍ଦର ଓ ସୁନ୍ଦରୀରୂପେ ପରିଗଣିତ ହେଲେ । ଦୁହେଁଯାକ ମିଳିମିଶି ସମସ୍ତଙ୍କ ମନକୁ ମନ୍ଥନ କରିବାକୁ ଲାଗିଲେ । ସଂସାରରେ କେହି ସେ ଦୁହିଁଙ୍କ ପ୍ରଭାବରୁ ମୁକ୍ତ ହୋଇ ପାରିଲେ ନାହିଁ ।

ସନ୍ଧ୍ୟା ନିତାନ୍ତ ଲଜ୍ଜିତା ହୋଇ ଗୋଟିଏ ଏକାନ୍ତ ସ୍ଥାନରେ ଶିବଙ୍କୁ ଧ୍ୟାନ କରି ତପସ୍ୟା ଆରମ୍ଭ କଲା । ସୁଦୀର୍ଘ କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ଶିବ ତାଙ୍କ ନିକଟରେ ପହଞ୍ଚି କହିଲେ—"ସନ୍ଧ୍ୟା, ତୁମ ତପସ୍ୟାରେ ମୁଁ ସନ୍ତୁଷ୍ଟ ହୋଇଛି । ତୁମେ ଇପ୍ସିତ ବର ପ୍ରାର୍ଥନା କର ବୋଲି କହିଲେ ।"

ଏହା ଶୁଣି ସନ୍ଧ୍ୟା କହିଲେ—"ପ୍ରଭୋ, ମୁଁ ଜନ୍ମ ହେବାମାତ୍ରେ ମୋ ମନରେ ବିକାର ଜାତ ହେଲା । ଏହା ଅତ୍ୟନ୍ତ ଲଜ୍ଜାର ବିଷୟ । ଏଣିକି ନବଜାତ ଶିଶୁର ମନରେ କୌଣସି ପ୍ରକାର ବିକାର ଜାତ ନ ହେଉ । ଆଉ ମଧ୍ୟ ବାପା ଭାଇମାନଙ୍କ ସମ୍ମୁଖରେ ମୋ ମନରେ ବିକାର ଜାତ ହୋଇ ଥିବାରୁ, ଏଣିକି କୌଣସି କନ୍ୟାର, ସେମାନଙ୍କ ବାପା, ଭାଇ ଓ ଗୁରୁଜନଙ୍କ ଆଗରେ ବିକାର ଜାତ ନହେଉ ଯଦି କୌଣସି କନ୍ୟାର ଏପରି ଅବସ୍ଥାରେ ବିକାର ଜାତ ହେବ, ସେ ଘୋର ନର୍କରେ ପଡ଼ି ଅଶେଷ କଷ୍ଟ ଭୋଗ କରିବ ! ଆଉ ମଧ୍ୟ ମୋତେ କୌଣସି ବ୍ରହ୍ମତେଜସ୍ୱୀ ଯୋଗାରୂଢ଼ ପୁରୁଷ ସ୍ୱାମୀ ରୂପରେ ମିଳନ୍ତୁ । ଅନ୍ୟ କୌଣସି ପୁରୁଷଙ୍କୁ ଦେଖି ମୋ ମନରେ ବିକାର ଜାତ ନହେଉ । ମୁଁ ପତିବ୍ରତାଙ୍କ ମଧ୍ୟରେ ଶ୍ରେଷ୍ଠା ନାରୀ ରୂପେ ପରିଗଣିତା ହୁଏ ।"

ସନ୍ଧ୍ୟାର ବର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ କହିଲେ ଭୂତନାଥ ଶିବ—"ତୁମର ପ୍ରତ୍ୟେକ ପ୍ରାର୍ଥନା ମୁଁ ସ୍ୱୀକାର କରୁଛି । ପ୍ରାଣୀମାନଙ୍କର ଚାରୋଟି ଅବସ୍ଥା ହେବ । ବାଲ୍ୟ, କୈଶୋର, ଯୁବା ଓ ବାର୍ଦ୍ଧକ୍ୟ । ମଣିଷର ମନରେ ବାଲ୍ୟ ଓ କୈଶୋରାବସ୍ଥା ପରେ କାମବିକାର ଜାତ ହେବ ଏବଂ ଭାଇ ଓ ପିତାଙ୍କ ସମ୍ମୁଖରେ କୌଣସି କନ୍ୟାର ମନରେ କାମବିକାର ଜାତ ହେବନାହିଁ । ଯଦି ଏପରି ଅବସ୍ଥା ଜାତ ହୁଏ, ତେବେ ସେ କନ୍ୟା ଘୋର ରୌରବ ନର୍କରେ ପତିତ ହେବ ।

"ତୁମେ ଇହଜନ୍ମରେ କୌଣସି ଯୋଗାରୂଢ଼ ପୁରୁଷଙ୍କୁ ସ୍ୱାମୀରୂପେ ପାଇ ପାରିବ ନାହିଁ । ଏହି ଶରୀର ତ୍ୟାଗ କରିବା ପରେ, ତୁମେ ପରଜନ୍ମରେ ମହାମୁନି ବଶିଷ୍ଠଙ୍କ ପତ୍ନୀ ହେବ ଏବଂ ପତିବ୍ରତାମାନଙ୍କ ମଧ୍ୟରେ ତୁମେ ଅଗ୍ରଗଣ୍ୟା ହେବ ।"

ଏପରି ବରପ୍ରଦାନ କରି ଶିବ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଠିକ୍ ସେତିକି-ବେଳେ ମେଧାତିଥି ମୁନି ଯଜ୍ଞ ଆରମ୍ଭ କରୁଥିଲେ । ସନ୍ଧ୍ୟା ସେହି ଯଜ୍ଞରେ ଅଲକ୍ଷିତରେ ଶରୀର ତ୍ୟାଗ କରିଦେଲେ । ଶରୀର ତ୍ୟାଗ କରିବା ପରେ ସେ ସୂର୍ଯ୍ୟଲୋକରେ ସ୍ଥାନ ଅଧିକାର କରି ରହିଲେ । ତତ୍ପରେ ତାଙ୍କ ଶରୀର ଦୁଇଭାଗ ହୋଇଗଲା । ସେହି ଦୁଇ ଅଂଶର ଗୋଟିଏ ଭାଗରୁ ସାୟଂସନ୍ଧ୍ୟା ଓ ପ୍ରାତଃସନ୍ଧ୍ୟା ଉତ୍ପନ୍ନ ହେଲେ ଏବଂ ଅନ୍ୟ ଭାଗରୁ ମେଧାତିଥିଙ୍କ କନ୍ୟା ଅରୁନ୍ଧତୀ ଉତ୍ପନ୍ନ ହେଲେ । କାଳକ୍ରମେ ସେହି ଅରୁନ୍ଧତୀ ବଶିଷ୍ଠ ମହର୍ଷିଙ୍କ ପତ୍ନୀରୂପେ ଜଗଦ୍ବନ୍ଦ୍ୟା ହୋଇ ପାରିଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ, ପୂର୍ବରୁ ଆପଣ କହିଥିଲେ ଯେ ଅରୁନ୍ଧତୀ ଥିଲେ କର୍ଦ୍ଦମ ଋଷିଙ୍କ ପୁତ୍ରୀ; ପୁଣି ବର୍ତ୍ତମାନ କହୁଛନ୍ତି—ସେ ମେଧାତିଥିଙ୍କ ମାନସପୁତ୍ରୀ ଥିଲେ । ତାହେଲେ କେଉଁଟି ଠିକ୍ ?"

ସୂତ ମହର୍ଷି ଉତ୍ତର ଦେଇ କହିଲେ—"ମହାଭାଗ, କଳ୍ପଭେଦରେ ଆଖ୍ୟାୟିକାର ରୂପାନ୍ତର ହୋଇଯାଏ । ଗୋଟିଏ କଳ୍ପରେ ଅରୁନ୍ଧତୀ ଥିଲେ କର୍ଦ୍ଦମ ଋଷିଙ୍କର ପୁତ୍ରୀ; କିନ୍ତୁ

ଅନ୍ୟ କଳ୍ପରେ ସେ ମେଧାତିଥିର କନ୍ୟା ରୂପେ ଜନ୍ମଗ୍ରହଣ କରିଥିଲେ । ଅରୁନ୍ଧତୀ ଥିଲେ ସର୍ବଶ୍ରେଷ୍ଠ ପତିବ୍ରତା । ଆଜି ମଧ୍ୟ ସେ ସପ୍ତର୍ଷିମଣ୍ଡଳରେ ଅରୁନ୍ଧତୀ ନାମରେ ପରିଚିତା ।"

ଏଣେ ଶିବଙ୍କଦ୍ୱାରା ଅପମାନିତ ହୋଇ ବ୍ରହ୍ମା କାମଦେବଙ୍କୁ ଶିବଙ୍କ ନିକଟକୁ ପଠାଇଲେ । କାମଦେବ ନିଜର ସୈନ୍ୟ ସାମନ୍ତ ସଜାଇ ଶିବଙ୍କ ମନରେ ବିକାର ଉତ୍ପନ୍ନ କରାଇବା ଲାଗି, ଭୂତନାଥଙ୍କ ତପସ୍ୟା ସ୍ଥଳରେ ଉପସ୍ଥିତ ହେଲା । ସେଠାରେ ସେ ନାନା ପ୍ରକାର କୌଶଳ ଦେଖାଇ ଶିବଙ୍କ ମନରେ ବିକାର ଉତ୍ପନ୍ନ କରିବାକୁ ଚେଷ୍ଟା କରିଥିଲା । କିନ୍ତୁ ଦୃଢ଼ବ୍ରତୀ ଶିବଙ୍କ ମନରେ ଆଦୌ ବିକାର ଉତ୍ପନ୍ନ ହେଲାନାହିଁ । କାମଦେବ ତା' ଚେଷ୍ଟାରେ ବ୍ୟର୍ଥ ହୋଇ ବ୍ରହ୍ମାଙ୍କ ନିକଟକୁ ଫେରି ଆସି କହିଲା, "ପ୍ରଭୋ, ଶିବଙ୍କଠାରେ ମୋ'ର ସମସ୍ତ ଚେଷ୍ଟା ବିଫଳ ହୋଇଗଲା । ଶିବ କୌଣସିମତେ ମୋ' ପ୍ରଭାବରେ ପ୍ରଭାବିତ ହେଲେନାହିଁ । ଏଣୁ ଆପଣ ଆଉ କିଛି ନୂତନ ଶକ୍ତି ମୋତେ ପ୍ରଦାନ କରନ୍ତୁ !"

ସୂତ କହିଲେ—"ହେ ଶୌନକ, ପ୍ରାଣୀ ନିଜର ଚେଷ୍ଟାରେ ଏତେଦୂର ବିମୂଢ଼ ହୋଇ ଯାଏ ଯେ, ସେ ନିଜର ମୁଖ୍ୟ ବିଷୟ ମଧ୍ୟ ଭୁଲିଯାଏ । ଏହିପରି ଭାବରେ ମନ୍ମଥ ମଧ୍ୟ ନିଜର ମୁଖ୍ୟ ବିଷୟ ଭୁଲିଯାଇ ଶିବଙ୍କ ଉପରେ ନିଜର ପ୍ରଭାବ ବିସ୍ତାର କରିବାକୁ ଲାଗିଲେ । ଏଣେ ପ୍ରଜାପତିଙ୍କ ମନରେ ଶିବଙ୍କ ପ୍ରତି ଈର୍ଷା ଜାତ ହେଲା । ସେ ଭାବିଲେ— 'କୌଣସିମତେ ଶିବଙ୍କ ମନରେ ବିକାର ସୃଷ୍ଟି କରାଇ ତାଙ୍କୁ ପରାଭବ ଦେବାକୁ ହେବ । ସେ ବିଷୟାକାଙ୍କ୍ଷାରେ ପଡ଼ି ସାଧାରଣ ଇତର ଲୋକଙ୍କ ପରି ନାରୀ ପ୍ରେମରେ ବଶୀଭୂତ ହେବେ ।' ତେଣୁ ସେହି ବିଷୟରେ ସଫଳତା ହାସଲ କରିବାଲାଗି ପ୍ରଜାପତି ମନେ ମନେ ଉପାୟ ଚିନ୍ତା କରିବାକୁ ଲାଗିଲେ ।"

## ଛପ୍ପୟ

"ବିଧିନେ ଆଜ୍ଞା ଦଇ କାମ ଶିବ ତଊ ବଗାରେ ।
ନିର୍ବିକାର ଶ୍ରୀଶମ୍ଭୁ କାମ କା କରେ ବିଗାରେ ।।
ମଳୟାନିଳ ସୁବସନ୍ତ ସବନ ମିଲ ଶକ୍ତି ଲଗାଇ ।
କିନ୍ତୁ ମଲିନତା ନହୀଂ ମହେଶ୍ୱର ମନ ମହଁ ଆଈ ।।
ଅପନ ସୋ ମନ ମଦନ ଲେ, ବ୍ରହ୍ମାଦିକ ଢିଁଗ ଫିରି ଗୟୋ ।
ନିସ୍ପୃହତା ସୁନି ଶମ୍ଭୁ କୀ, ସବ କୋ ମନ ବିସ୍ମିତ ଭୟୋ ।।"



# ଶିବ ଶିବାଙ୍କ ବିବାହ

"ତ୍ରୟୋଦଶାଦାଦ୍ଧର୍ମାୟ ତଥୈକାମଗ୍ନୟେ ବିଭୁଃ ।
ପିତୃଭ୍ୟଃ ଏକାଂ ଯୁକ୍ତେଭ୍ୟୋ ଭବାୟୈକାଂ ଭବଚ୍ଛିଦେ ॥"
(ଭାଗବତ ୪।୧।୪୮)

ଛପ୍ପୟ

"ଦକ୍ଷ କରେ୍ୟା ତପ ମହାଶକ୍ତି ଆରାଧୀ ବିଧିବତ୍ ।
ପ୍ରକଟୀ ଜଗ କୀ ମାତୁ କହେ୍ୟା ବର ମାଁଗୋ ଇଚ୍ଛିତ ॥
ଦକ୍ଷ କହେ୍ୟା ମମ ଗେହ ପ୍ରକଟ ହୈ ଚରିତ ଦିଖାଓ ।
ଶମ୍ଭୁ ସଙ୍ଗ କରି ବ୍ୟାହ ପ୍ରେମ କୋ ମରମ ଜତାଓ ॥
ଏବମସ୍ତୁ ମାତା କହେ୍ୟା ଦୈ ବର ଅନ୍ତରହିତ ଭଈ ।
ତେ ଈ ରୁଦ୍ରାଣୀ ସତୀ ଦକ୍ଷ କୁମାରୀ ବନି ଗଈ ॥"

---

ଅର୍ଥାତ—ଦକ୍ଷ ପ୍ରଜାପତି ନିଜର କନ୍ୟାମାନଙ୍କ ମଧ୍ୟରୁ ତେରଜଣ ଧର୍ମଙ୍କୁ ପ୍ରଦାନ କରିଥିଲେ । ଗୋଟିଏ କନ୍ୟା ଅଗ୍ନି, ଗୋଟିଏ ପିତରଙ୍କୁ ଏବଂ ସବୁଠାରୁ ସାନ ଝିଅ ସତୀଙ୍କୁ ସଂହାରମୟୀ ଶକ୍ତିମାନ୍ ଦେବ ଭଗବାନ୍ ସଦାଶିବଙ୍କ ସହିତ ବିବାହ କରାଇଥିଲେ ।

ପ୍ରତ୍ୟେକ କ୍ଷେତ୍ର ସ୍ପର୍ଦ୍ଧାରେ ବୃଦ୍ଧି ଓ ସୃଷ୍ଟି ହୋଇଥାଏ । ଧନୀ ସହିତ ଧନୀ, ବିଦ୍ୱାନ୍ ସହିତ ବିଦ୍ୱାନ୍, ଗୁଣୀ ସହିତ ଗୁଣୀର ସ୍ପର୍ଦ୍ଧା ଫଳରେ ପ୍ରତ୍ୟେକର ଉନ୍ନତି ହୋଇଥାଏ; କିନ୍ତୁ ସ୍ପର୍ଦ୍ଧାରେ କଳହ ଓ ଅସହିଷ୍ଣୁତା ମଧ୍ୟ ବୃଦ୍ଧି ପାଇଥାଏ । ଯେଉଁଠାରେ ସ୍ପର୍ଦ୍ଧା ନାହିଁ ସେଠାରେ ଅଶାନ୍ତି, କଳହ, ବିନାଶର ସମ୍ଭା ରହେନାହିଁ ଏବଂ ଅପର ଦିଗରେ ମଧ୍ୟ ସୃଷ୍ଟି,

ବ୍ୟାପାର ତଥା ଉନ୍ନତ ମଧ୍ୟ ହୋଇ ପାରେନାହିଁ । ସ୍ପର୍ଦ୍ଧା ନ ରହିଲେ ନିର୍ବିକାର ତଥା ନିର୍ଲୋଭ ଭାବନା ମନରେ ଉଦ୍ରେକ ହୁଏ । କେବଳ ମର୍ତ୍ତ୍ୟରେ ନୁହେ, ଏହି ସ୍ପର୍ଦ୍ଧା ଦେବ୍ୟ-ଲୋକରେ ମଧ୍ୟ ରହିଛି । ସ୍ପର୍ଦ୍ଧାରେ ସୃଷ୍ଟିର ଚକ୍ର ଅନବରତ ଚାଲିଛି; କିନ୍ତୁ ଯେ ଏକାକୀ ସେ କାହାର ସହିତ ସ୍ପର୍ଦ୍ଧା କରିବାର ସୁଯୋଗ ପାଇପାରେ ନାହିଁ । ତେଣୁ ଅଦ୍ୱୈତତା-ଠାରେ ସ୍ପର୍ଦ୍ଧାର ସମ୍ଭାବନା ରହେନାହିଁ । ଯେତେବେଳେ ସେହି ଅଦ୍ୱୈତ ଓ ନିରାକାର ଇଚ୍ଛା କରନ୍ତି, ସେତେବେଳେ ସେ ଏକରୁ ଅନେକ ହୋଇ ପରସ୍ପର ମଧ୍ୟରେ ସ୍ପର୍ଦ୍ଧା କରନ୍ତି । ଏଥିରେ ତାଙ୍କର ଆନନ୍ଦ ଏବଂ ତା'ଫଳରେ ସେ ଜଗତ୍‌ବାସୀଙ୍କୁ ଆନନ୍ଦିତ କରାଇଥା'ନ୍ତି । ଗୋଟିଏ ନାଟକ ଦଳରେ ଭାଇ, ଦାଦା ମଉସା, ପିଉସା ମିଶି ରହିଥାଆନ୍ତି । ସେମାନଙ୍କ ମଧ୍ୟରେ ପରସ୍ପରର ଆତ୍ମୀୟତା ରହିଥାଏ; କିନ୍ତୁ ଯେତେବେଳେ ସେମାନେ ନାଟକୀୟ ପୋଷାକ ପରିଚ୍ଛଦରେ ଭୂଷିତ ହୁଅନ୍ତି, ସେହିମାନେ ପରସ୍ପର ସହିତ କଳହ କରନ୍ତି, ଯୁଦ୍ଧ କରନ୍ତି ଏବଂ ପରସ୍ପରର ବିରୋଧାଚରଣ କରନ୍ତି; କିନ୍ତୁ ନାଟକର ଯବନିକା ପଡ଼ିଯିବା ପରମୁହୂର୍ତ୍ତରେ ସେମାନେ ପୁଣି ପରସ୍ପର ମିଳିମିଶି ପୂର୍ବପରି ଚଳନ୍ତି । ଏହାହିଁ ହେଉଛି—ନିରାକାର ଓ ସାକାରଙ୍କର ଲୀଳା ।

ସୂତ କହୁଛନ୍ତି—"ମୁନିଗଣ, ସଦାଶିବ ରୁଦ୍ର ରୂପରେ ପ୍ରକଟ ହେବାମାତ୍ରେ ତାଙ୍କ ଆଚରଣରେ କେତେକ ପରିବର୍ତ୍ତନ ପରିଲକ୍ଷିତ ହେଲା । ବ୍ରହ୍ମା ନିଜର ମାନସପୁତ୍ର କାମର ପ୍ରଭାବରେ ପ୍ରଭାବିତ ହୋଇ ପଡ଼ିଲେ । ତାଙ୍କ ମନରେ ବିକାର ଜାତ ହେବାମାତ୍ରେ ଶିବ ତାଙ୍କୁ ତିରସ୍କାର କରିଥିଲେ । ତେଣୁ ବ୍ରହ୍ମା ମନେ ମନେ ଭାବିଲେ—"ଏ ରୁଦ୍ର ମୋର ଭ୍ରୂକୁଟିରୁ ଜନ୍ମ ଗ୍ରହଣ କରି ମୋତେ ତିରସ୍କାର କଲା ! ତେଣୁ ଏହାଙ୍କ ମନରେ ଯେକୌଣସିମତେ ବିକାର ସୃଷ୍ଟି କରିବାକୁ ହେବ ।"

ବ୍ରହ୍ମାଙ୍କ ମନରେ ଶିବଙ୍କୁ ପରାସ୍ତ କରିବାର ସ୍ପର୍ଦ୍ଧା ଜାତ ହେବାମାତ୍ରେ, ସେ ନାନା ପ୍ରକାର ଚେଷ୍ଟା କରିବାକୁ ଲାଗିଲେ । ବସନ୍ତ, ମଳୟ ପବନ, ରତି, କନ୍ଦର୍ପ, ସମସ୍ତେ ସମ୍ମିଳିତ ଭାବରେ ଆକ୍ରମଣ କରିଥିଲେହେଁ, ଶିବ ଆଦୌ ବିଚଳିତ ହେଲେନାହିଁ । ତେଣୁ ବ୍ରହ୍ମା କାମର ସହଚର 'ମାରଗଣ'ଙ୍କୁ ସୃଷ୍ଟି କଲେ । ମାରଗଣଙ୍କୁ ସଙ୍ଗରେ ନେଇ କାମଦେବ ସର୍ବଦା ଶିବଙ୍କ ପଛେ ପଛେ ବୁଲିବାକୁ ଲାଗିଲା । ଶିବ ଯେଉଁ ଯେଉଁ ସ୍ଥାନକୁ ଯାଉଥିଲେ, କାମଦେବ 'ମାରଗଣ'ଙ୍କ ସହିତ ସେହି ସେହି ସ୍ଥାନକୁ ଯିବାକୁ ଲାଗିଲା । ତଥାପି ଶିବ ତିଳେମାତ୍ର ବିଚଳିତ କିମ୍ବା ବିକାରଗ୍ରସ୍ତ ହେଲେନାହିଁ ।

ବ୍ରହ୍ମା ଏଥିରେ ଆଦୌ ହତାଶ ହେଲେ ନାହିଁ । ସେ ନିଜର ପୌରୁଷ ପ୍ରୟୋଗ କରି ବିଫଳ ହେବା ପରେ ଶ୍ରୀହରିଙ୍କ ଶରଣ ପଶିଲେ । ସେ ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିବା ପାଇଁ ଘୋର ତପସ୍ୟା ଆରମ୍ଭ କଲେ । ତାଙ୍କ ତପସ୍ୟାରେ ମୁଗ୍ଧ ହୋଇ ବିଷ୍ଣୁ ସ୍ୱୟଂ ଆବିର୍ଭୂତ ହୋଇ ବ୍ରହ୍ମାଙ୍କ ଉଦ୍ଦେଶ୍ୟ ଜାଣିବାପରେ କହିଲେ—"ବ୍ରହ୍ମନ୍, ଆପଣ ବେଦବେତ୍ତା ହୋଇ

ଏପରି ଅପଚେଷ୍ଟା କରୁଛନ୍ତି କାହିଁକି ? ଶିବ ହେଉଛନ୍ତି-- ନିର୍ବିକାର ଓ ନିରାକାର । ତାଙ୍କ ମନରେ କାମ ବାସନା କିପରି ଉତ୍ପନ୍ନ ହେବ ? ତଥାପି ମୁଁ ଆପଣଙ୍କୁ ଗୋଟିଏ ଉପାୟ ବତାଇ ଦେଉଛି । ଶକ୍ତି ବିନା ପୁରୁଷ ସୃଷ୍ଟି କରିବାରେ ସମର୍ଥ ହୁଏନାହିଁ । ବିଶ୍ୱବ୍ୟାପିନୀ ମହାଶକ୍ତି ମହାଲକ୍ଷ୍ମୀ, ବ୍ରହ୍ମାଣୀ ଓ ରୁଦ୍ରାଣୀ ରୂପରେ ଅବିର୍ଭୂତା ହୁଅନ୍ତି । ସେହି ଅଚିନ୍ତ୍ୟ ମହିମାମୟୀ ମହାଶକ୍ତିଙ୍କ ମଧ୍ୟରେ ରୁଦ୍ରାଣୀ ଶିବଙ୍କୁ ବଶୀଭୂତା କରି ପାରିବେ । ଆପଣ ମହାମାୟା ଶଙ୍କରୀଙ୍କ ଆରାଧନା କରନ୍ତୁ । ସେ ତୁମଙ୍କୁ ଅଭୀଷ୍ଟ ବର ପ୍ରଦାନ କରିବେ ।" ଏହା କହି ଭଗବାନ୍ ବିଷ୍ଣୁ ଅନ୍ତର୍ଦ୍ଧାନ ହୋଇଗଲେ ।

ବିଷ୍ଣୁଙ୍କ ଆଦେଶ ପାଇ ବ୍ରହ୍ମା ମହାମାୟା ଜଗଦମ୍ବିକାଙ୍କ ଆରାଧନାରେ ନିମଗ୍ନ ହେଲେ । ଅନେକ ଦିନ ପରେ ମହାମାୟା ଜଗଦମ୍ବିକା ପ୍ରସନ୍ନା ହେଲେ । ତହୁଁ ବ୍ରହ୍ମା ବିନୀତ ଭାବରେ କହିଲେ—"ଶିବ ଦାରା ଗ୍ରହଣ ନକଲେ, ସୃଷ୍ଟିର ପ୍ରକ୍ରିୟା ସୁରୁଖୁରୁରୂପେ ଚାଲିପାରିବ ନାହିଁ । ଏହା ଯେପରି ସମ୍ଭବ ହେବ, ଆପଣ ତାର ବ୍ୟବସ୍ଥା କରନ୍ତୁ ।"

ଏହା ଶୁଣି କହିଲେ ଭବାନୀ—"ଶିବ ହେଉଛନ୍ତି ନିର୍ବିକାର ପୁରୁଷ । ତାଙ୍କ ମନରେ କାମବାସନା ଆଦୌ ଜାତ ହେବନାହିଁ । କାମନା ବ୍ୟତିରେକେ ବିବାହ ସମ୍ଭବ ନୁହେଁ । ତଥାପି ତୁମର ତପସ୍ୟା ବ୍ୟର୍ଥ ହେବ ନାହିଁ । ମୁଁ ଦକ୍ଷଙ୍କ ଗୃହରେ ପୁତ୍ରୀରୂପେ ଜନ୍ମଲାଭ କରି ଶିବଙ୍କୁ ବିବାହ କରିବି ।" ଏହା କହି ଦେବୀ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଆଦ୍ୟାଶକ୍ତିଙ୍କଠାରୁ ଆଜ୍ଞା ପାଇ, ବ୍ରହ୍ମା ଦକ୍ଷଙ୍କୁ କହିଲେ—"ବତ୍ସ, ତୁମେ ମହାଶକ୍ତିଙ୍କୁ ପ୍ରାର୍ଥନା କର । ସେ ତୁମ କୋଳରେ ପୁତ୍ରୀରୂପେ ଜନ୍ମଗ୍ରହଣ କରିବେ ।"

ବ୍ରହ୍ମାଙ୍କ ଆଦେଶରେ ଦକ୍ଷ କ୍ଷୀରସାଗର ତୀରରେ ସହସ୍ର ବର୍ଷ ପର୍ଯ୍ୟନ୍ତ ନିରାହାରରେ ତପସ୍ୟା କରିବାକୁ ଲାଗିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଦେବୀ ମହାମାୟା ଦକ୍ଷଙ୍କ ଆଗରେ ଆବିର୍ଭୂତା ହୋଇ କହିଲେ—"ମୁଁ ତୁମ ତପସ୍ୟାରେ ପ୍ରୀତ ହୋଇଛି । ତୁମେ ତୁମର ଅଭୀଷ୍ଟ ପ୍ରାର୍ଥନା କର ।"

ଏହା ଶୁଣି ଆନନ୍ଦ ମନରେ କହିଲେ ଦକ୍ଷ—"ଦେବି ! ତୁମେ ମୋ କୋଳରେ ଜନ୍ମ ଲାଭ କରି ଶିବଙ୍କୁ ବିବାହ କର, ଏହା ମୋର ଏକମାତ୍ର ପ୍ରାର୍ଥନା ।"

ତାହା ଶୁଣି କହିଲେ ମହାଶକ୍ତି—"ଦକ୍ଷ, ତୁମର ପ୍ରାର୍ଥନା ପୂରଣ ହେବ । ମୁଁ ତୁମ କୋଳରେ ଜନ୍ମଲାଭ କରି ଶିବଙ୍କୁ ବିବାହ କରିବି; କିନ୍ତୁ ତୁମର ସ୍ନେହ ମୋ ପ୍ରତି ଶିଥିଳ ହେଲେ, ମୁଁ ଏ ଶରୀର ତ୍ୟାଗ କରିଦେବି ।" ଏତିକି କହି ସତୀ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । କେତେଦିନ ପରେ ଯଥାନିର୍ଦ୍ଦିଷ୍ଟ ସମୟରେ ମହାଶକ୍ତି ଦକ୍ଷର ଗୃହରେ ଜନ୍ମଗ୍ରହଣ କଲେ ସତୀ ବିବାହଯୋଗ୍ୟା ହେବାମାତ୍ରେ ଶିବଙ୍କୁ ବରରୂପେ ପାଇବା ପାଇଁ ତପସ୍ୟା କରିବାକୁ ଲାଗିଲେ । ଶାସ୍ତ୍ରବିଧି ଅନୁସାରେ ସେ 'ନନ୍ଦାବ୍ରତ' ଆରମ୍ଭ କଲେ ।

ତାଙ୍କର କଠୋର ତପସ୍ୟା ଦେଖିବାପାଇଁ ବ୍ରହ୍ମା, ବିଷ୍ଣୁ ଓ ଅନ୍ୟାନ୍ୟ ଦେବଗଣ ନିଜ ନିଜର ପତ୍ନୀମାନଙ୍କ ସହିତ ତପ ସ୍ଥାନକୁ ଆସିଲେ । ବ୍ରହ୍ମା ସତୀଙ୍କର ରୂପଲାବଣ୍ୟ ଦେଖି ମନେ ମନେ ଆନନ୍ଦିତ ହୋଇ ଭାବିଲେ—'ଏଥର ମୋର ଇଚ୍ଛା ପୂରଣ ହେବ ।' ତା'ପରେ ସେ ବିଷ୍ଣୁଙ୍କ ସହିତ କୈଳାସପୁରରେ ପ୍ରବେଶ କରି ଶିବଙ୍କୁ କହିଲେ—"ଆପଣ ଆଉ ଏ କଠୋର ଜୀବନ ଯାପନ କରନ୍ତୁ ନାହିଁ । ଆମେ ଦୁହେଁ ବ୍ରହ୍ମାଣୀ ଓ ବୈଷ୍ଣବୀ ଦୁହିଙ୍କୁ ବିବାହ କରିଛୁ । ତୁମେ ବିବାହ ନକଲେ, ସୃଷ୍ଟିର ପ୍ରକ୍ରିୟା ଯଥାଯଥଭାବରେ ଚାଲିବ କିପରି ? ଆପଣ ଆମ ପରି ଏକରୁ ଦୁଇ ଏବଂ ଦୁଇରୁ ଅନେକ ରୂପ ନହେଲେ ସୃଷ୍ଟି ଅଳ୍ପକାଳ ମଧ୍ୟରେ ବିନଷ୍ଟ ହୋଇଯିବ ।"

ଏହା ଶୁଣି କହିଲେ ସଦାଶିବ—"ଦେଖନ୍ତୁ, ମୋର ବିବାହ କରିବାକୁ ଆଦୌ ଇଚ୍ଛା ନାହିଁ । ନାରୀ ହେଉଛନ୍ତି—ସମାଧି, ଯୋଗ ଓ ତପସ୍ୟାର ବିଘ୍ନକାରିଣୀ । ମୁଁ ଯେଉଁ ଜୀବନ-ଯାପନ କରୁଛି, ସେଥିରେ ଯେ କୌଣସି ନାରୀ ଅତ୍ୟନ୍ତ ଅସୁବିଧାରେ ପଡ଼ିବ । ତଥାପି ଆପଣ ଦୁହେଁ ଯେତେବେଳେ ଆଗ୍ରହ ପ୍ରକାଶ କରୁଛନ୍ତି, ମୋର ଆପତ୍ତି କରିବାର କିଛି ନାହିଁ । ଆପଣ କନ୍ୟାର ବ୍ୟବସ୍ଥା କରନ୍ତୁ; ମୋତେ ବିବାହ କରି ସେ ଏଠାରେ ପଡ଼ି ରହିବ ।"

ବ୍ରହ୍ମା ଓ ବିଷ୍ଣୁ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ଦେବାଧିଦେବ, ଦକ୍ଷକୁମାରୀ ସତୀ ସଂସାରରେ ସର୍ବାପେକ୍ଷା ଅଧିକ ସୁନ୍ଦରୀ । ସେ ଆପଙ୍କୁ ସ୍ୱାମୀ ରୂପରେ ପାଇବାପାଇଁ 'ନନ୍ଦାବ୍ରତ' ଆରମ୍ଭ କରିଛନ୍ତି । ଆପଣ ତାଙ୍କୁ ଥରେ ମାତ୍ର ଦର୍ଶନ ଦିଅନ୍ତୁ, ତା'ପରେ ଯାହା ଆପଣଙ୍କ ଇଚ୍ଛା, ତାହା କରିବେ ।"

ଶିବ ବ୍ରହ୍ମାଙ୍କ ଅନୁରୋଧ ଆନନ୍ଦରେ ସ୍ୱୀକାର କଲେ । ସତୀଙ୍କର 'ନନ୍ଦାବ୍ରତ' ସମାପ୍ତ ହେବାମାତ୍ରେ ଶିବ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ—"ଦେବି ! ତୁମେ ଯାହା ଇଚ୍ଛା କରୁଛ, ସେହି ବର ମୋ'ଠାରେ ପ୍ରାର୍ଥନା କର ।"

ନିଜ ସମ୍ମୁଖରେ ସାକ୍ଷାତ୍ ଶୂଳପାଣିଙ୍କୁ ଦେଖି ସତୀ ଲଜ୍ଜାରେ ସଙ୍କୁଚିତା ହୋଇଗଲେ । ସେ ପାଦ୍ୟ, ଅର୍ଘ୍ୟ, ଗନ୍ଧ, ପୁଷ୍ପରେ ସଦାଶିବଙ୍କ ପାଦପୂଜା କରି ଲଜ୍ଜାରେ ଭୂମିକୁ ଚାହିଁ ସେହିଠାରେ ଛିଡ଼ା ହୋଇ ରହିଲେ । ସଙ୍କୋଚରେ ତାଙ୍କ ମୁଖରୁ ପଦେ ହେଲେ କିଛି ବାହାରିଲା ନାହିଁ । ସଦାଶିବ ସତୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଗଲେ । ସେ ନିଜକୁ ଭୁଲିଯାଇ ଆବେଗପୂର୍ଣ୍ଣ ସ୍ୱରରେ କହିଲେ—"ତୁମେ ମୋତେ ବିବାହ କରିବ ?"

ଯୋଗିରାଜଙ୍କ ପ୍ରଶ୍ନରେ ସତୀଙ୍କ ମୁଖକମଳ ବିକଶିତ ହୋଇ ଉଠିଲା । ସେ ନିଜର ଅଭୀଷ୍ଟ ସିଦ୍ଧି ହୋଇଥିବାର ଜାଣି ଶିବଙ୍କ ପାଦପଦ୍ମରେ ପ୍ରଣାମ କରି ଆନନ୍ଦରେ ମାତାପିତାଙ୍କ ନିକଟକୁ ଫେରିଗଲେ ।

ସୂତ କହୁଛନ୍ତି—"ହେ ମୁନିବୃନ୍ଦ, କାମନା ହିଁ ମନୁଷ୍ୟଙ୍କୁ ଅତ୍ୟନ୍ତ ହୀନ କରାଇ ଦିଏ । ମନୁଷ୍ୟ ଯେ ପର୍ଯ୍ୟନ୍ତ କାମନାର ବଶବର୍ତ୍ତୀ ନହୋଇଛି, ସେ ପର୍ଯ୍ୟନ୍ତ ସେ ସ୍ୱତନ୍ତ୍ର ଏବଂ ନିଷ୍କୃତି ରହିଥାଏ । ଯେତେବେଳେ କାମନା କିମ୍ବା ସଙ୍କଳ୍ପ ମନରେ ଉଦୟ ହୁଏ, ସେତେବେଳେ ତା'ର ସମସ୍ତ ପ୍ରକାର ସ୍ୱାତନ୍ତ୍ର୍ୟ ନଷ୍ଟ ହୋଇଯାଏ । ସେ ସମସ୍ତଙ୍କ ନିକଟରେ ନିତାନ୍ତ ବିନୀତ ହୋଇ ଉଠେ । ଯିଏ ବ୍ରହ୍ମାଙ୍କର ସାମାନ୍ୟ ସ୍ମରଣ ପାଇଁ ଶିବ ତାଙ୍କ ଉପରେ ବିରକ୍ତ ହୋଇଥିଲେ । ସେହି ଯେ ଗିରିଜ ଶିବଙ୍କ ମନରେ ବିବାହ ଲାଗି କାମନା ଜାତ ହେବାକ୍ଷଣି, ସେ ଅତ୍ୟନ୍ତ ଦୀନ ହୋଇ ଗଲେ । ତାଙ୍କର ଇଚ୍ଛା ହେଉଛି— ଲୌକିକ ଲୀଳା ।"

ଏହାପରେ ଶିବ ହରବତା ସତୀଙ୍କ ସୁନ୍ଦର ରୂପ ଲାବଣ୍ୟ ତଥା ନବଯୌବନକୁ ମନେ ମନେ ଚିନ୍ତା କରିବାକୁ ଲାଗିଲେ । କାମଦେବ ବସନ୍ତ, ମଳୟସମୀର ଓ ରତିଦେବୀଙ୍କ ସାହାଯ୍ୟରେ ଯେଉଁ ଶିବଙ୍କ ମନରେ କାମବିକାର ଜାତ କରାଇ ପାରି ନଥିଲେ; ସେହି ଶିବ ସତୀଙ୍କ ଦର୍ଶନ ପାଇବାମାତ୍ରେ ପ୍ରେମରେ ବିହ୍ୱଳ ହୋଇ ଉଠିଲେ । ସେ ଯାଇ ବ୍ରହ୍ମାଙ୍କ ନିକଟରେ ବିନୀତ ହୋଇ କହିଲେ —"ଆପଣ ଏପରି କୌଣସି ଉପାୟ ଚିନ୍ତା କରନ୍ତୁ, ଯାହା ଫଳରେ ଦକ୍ଷପ୍ରଜାପତି ମୋ' ସହିତ ସତୀଙ୍କ ବିବାହ ଶୀଘ୍ର କରାଇ ଦେବେ ।"

ଏହା ଶୁଣି ବ୍ରହ୍ମା ମନେ ମନେ ଆନନ୍ଦିତ ହୋଇ କହିଲେ—"ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି; ଦକ୍ଷ ମୋର ପୁଅ । ସେ ସତୀଙ୍କୁ ଆପଣଙ୍କ ସହିତ ନିଶ୍ଚିତ ଭାବରେ ବିବାହ କରାଇଦେବେ । ଆପଣଙ୍କ ବିବାହ ଲାଗି ମୁଁ ଯଥାଶକ୍ତି ସାହାଯ୍ୟ କରିବି ।"

ତାହା ଶୁଣି ଶିବ କହିଲେ—"ଆପଣ ଶୀଘ୍ର ଯାଇ ଦକ୍ଷଙ୍କୁ ମୋର ଅଭିପ୍ରାୟ ଜଣାଇ ଦିଅନ୍ତୁ ।"

ଏହା ଶୁଣିବାମାତ୍ରେ ବ୍ରହ୍ମା ଦକ୍ଷପ୍ରଜାପତିଙ୍କ ନିକଟକୁ ଯାଇଥିଲେ । ଦକ୍ଷ ଶିବଙ୍କ ସହିତ ସତୀଙ୍କ ବିବାହ ଲାଗି ଅତ୍ୟନ୍ତ ଚିନ୍ତିତ ଥିଲେ । ସେ ବ୍ରହ୍ମାଙ୍କଠାରୁ ପ୍ରସ୍ତାବ ଶୁଣିବା ମାତ୍ରେ ସଙ୍ଗେ ସଙ୍ଗେ ସ୍ୱୀକୃତି ପ୍ରଦାନ କଲେ । ବ୍ରହ୍ମା ଫେରି ଆସି ଶିବଙ୍କୁ ସମ୍ବାଦ ଦେବା ସଙ୍ଗେ ସଙ୍ଗେ ମରୀଚ ଆଦି ଋଷିଗଣଙ୍କୁ ବରଯାତ୍ରୀରୂପେ ନେଇ ଶିବଙ୍କ ଗହଣରେ ଦକ୍ଷଙ୍କ ବାସଭବନରେ ପହଞ୍ଚିଲେ । ବୈଦିକ ରୀତିରେ ଶିବଙ୍କ ସହିତ ସତୀଙ୍କର ବିବାହ ସମ୍ପନ୍ନ ହୋଇଗଲା । ଶିବ କୈଳାସ ପୁରକୁ ସତୀଙ୍କ ସହିତ ଫେରି ଯାଇ ବିବିଧ ଢଙ୍ଗରେ କ୍ରୀଡ଼ା କରିବାକୁ ଲାଗିଲେ । କେତେଦିନ ପରେ କୌଶଳ କିଶୋର ଶ୍ରୀରାମଙ୍କୁ ପରୀକ୍ଷା କରିବା ପାଇଁ ସତୀ ଦେବୀ ସୀତାଙ୍କ ରୂପ ଧାରଣ କରିଥିଲେ । ସେହି ଦୋଷରୁ ଶିବ ସତୀଙ୍କୁ ମନରୁ ତ୍ୟାଗ କରି ଦେଇଥିଲେ । ଠିକ ସେତିକିବେଳେ ଶିବଙ୍କ ସହିତ ଦ୍ରୋହ କରି ଦକ୍ଷ ଗୋଟିଏ ଯଜ୍ଞାନୁଷ୍ଠାନ ଆରମ୍ଭ କରିଥିଲେ । ସେହି ଯଜ୍ଞରେ ସତୀ ପ୍ରାଣତ୍ୟାଗ କଲେ ।

ସୂତ ଶୌନକ ଆଦି ମୁନିମାନଙ୍କୁ ବୁଝାଇ କହିଲେ—"ହେ ମୁନିଗଣ, ମୁଁ ଶୁଣିଛି; ଶିବ ବୀରଭଦ୍ରଙ୍କଦ୍ୱାରା ଯଜ୍ଞ ବିଧ୍ୱଂସ କରାଇ ଦକ୍ଷଙ୍କ ଶିରଚ୍ଛେଦ କରାଇଥିଲେ ହେଁ, ତାଙ୍କ ମନରେ ଶାନ୍ତି ଆସିଲା ନାହିଁ । ସେ ସତୀଙ୍କ ଶବକୁ କାନ୍ଧରେ ପକାଇ ଅତ୍ୟନ୍ତ ବିହ୍ୱଳ ହୋଇ ନୃତ୍ୟ ଆରମ୍ଭ କଲେ । ଏହା ଦେଖି ବିଷ୍ଣୁ ସୁଦର୍ଶନ ଚକ୍ରରେ ସତୀଙ୍କ ଦେହକୁ ଖଣ୍ଡ ଖଣ୍ଡ କରି ଫିଙ୍ଗି ଦେଲେ । ସତୀଙ୍କ ଅଙ୍ଗ ଯେଉଁ ଯେଉଁ ସ୍ଥାନରେ ପଡ଼ିଲା, ସେଠାରେ ଗୋଟିଏ ଲେଖାଏଁ ଶକ୍ତିପୀଠ ହୋଇଗଲା । ବର୍ତ୍ତମାନ ସେହି ସେହି ସ୍ଥାନରେ ଶକ୍ତିପୀଠ ସ୍ଥାପିତ ହୋଇଛି । ଏ ଧରଣର ଶକ୍ତିପୀଠ ଭାରତବର୍ଷରେ ଏକାବନଗୋଟି ହୋଇଥିବାର ଜଣାଯାଏ; କିନ୍ତୁ 'ଦେବୀ ଭାଗବତ'ରେ ଏହି ଶକ୍ତିପୀଠର ସଂଖ୍ୟା ଏକଶହ ଆଠ ବୋଲି ଲିଖିତ ଅଛି । ଯେଉଁ ଯେଉଁ ସ୍ଥାନରେ ସତୀଙ୍କ ଅଙ୍ଗ ପଡ଼ିଥିଲା, ସେହି ସେହି ସ୍ଥାନରେ ଶିବ ଭିନ୍ନ ଭିନ୍ନ ନାମରେ ଭୈରବରୂପେ ବିରାଜମାନ କରିଥିଲେ । ତନ୍ତ୍ରଶାସ୍ତ୍ରରେ କୁହ ଯାଇଛି—କାଶ୍ମୀରରେ ସତୀଙ୍କ କଣ୍ଠଦେଶ ପଡ଼ିଥିଲା । ସେଠାରେ ମହାମାୟାପୀଠ ସ୍ଥାପିତ ହୋଇଛି । ସେହି ପୀଠରେ ଶିବ ତ୍ରିସନ୍ଧ୍ୟେଶ୍ୱର ଭୈରବ ନାମରେ ନାମିତ ହୋଇଛନ୍ତି । ସେହିପରି ବୈଜନାଥରେ ସତୀଙ୍କ ହୃଦୟ ପଡ଼ିଥିବାରୁ, ସେଠାରେ ସତୀ ଦୁର୍ଗା ଓ ଶିବ ବୈଜନାଥ ଭୈରବ ନାମରେ ପୂଜିତ ହେଉଛନ୍ତି । ପ୍ରୟାଗ କ୍ଷେତ୍ରରେ ସତୀଙ୍କ ଅଙ୍ଗୁଳି ପଡ଼ିଥିବାରୁ, ସେଠାରେ ଲଳିତପୀଠ ଏବଂ ଶିବ 'ଭବ' ନାମରେ ବିରାଜମାନ କରିଛନ୍ତି । ଶିବ ସତୀଙ୍କୁ ଏପରି ସ୍ନେହ କରୁଥିଲେ ଯେ, ସେ ତାଙ୍କ ପ୍ରତ୍ୟେକ ଅଙ୍ଗର ସାନ୍ନିଧ୍ୟ ଛାଡ଼ି ପାରିଲେ ନାହିଁ । ସେହି ନିର୍ଦ୍ଦିଷ୍ଟ ଶକ୍ତିପୀଠରେ ଭୈରବରୂପେ ପୂଜିତ ହେବାକୁ ଲାଗିଲେ ।

"ମୁନିଗଣ, ଏହା ହେଉଛି—ସେହି ଧୂର୍ତ୍ତ କାମଦେବର କାର୍ଯ୍ୟ; କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ତାହା କାମଦେବର କାର୍ଯ୍ୟ ନୁହେଁ । ଦେବାଧିଦେବ ଲୋକଶିକ୍ଷା ଉଦ୍ଦେଶ୍ୟରେ ଏପରି କ୍ରୀଡ଼ା କରିଛନ୍ତି । ପ୍ରତ୍ୟେକ ମନୁଷ୍ୟ ଏପରି ରୋଚକ କାହାଣୀକୁ ଆନନ୍ଦର ସହିତ ଶ୍ରବଣ କରୁଛନ୍ତି; କିନ୍ତୁ ଏହା କାମକ୍ରୀଡ଼ା ସମ୍ବନ୍ଧୀୟ ଘଟଣା ହୋଇଥିଲେହେଁ ପ୍ରାଣୀମାନଙ୍କ ପକ୍ଷରେ ଆଦୌ ହାନିକାରକ ନୁହେଁ । ଯେପରି ସମସ୍ତ ସୁମିଷ୍ଟ ବସ୍ତୁ କଫ ରୋଗୀଙ୍କ ପକ୍ଷରେ ଅହିତକର ହୋଇଥିଲେହେଁ, ମଧୁ ପ୍ରୋକ୍ତ ରୋଗର ଉପଶମ କରିବାରେ ସାହାଯ୍ୟ କରିଥାଏ । ସେହିପରି ମୋହମାୟା ବିଷୟକ ଆଖ୍ୟାୟିକା ସାଧାରଣ ମନୁଷ୍ୟମାନଙ୍କ ପକ୍ଷରେ ଅହିତକର ହୋଇଥିଲେ ହେଁ ହରିହର ବିଷୟକ ଆଖ୍ୟାନ ଲୋକମାନଙ୍କ ପାପ ନିରାକରଣର କାରଣ ହୋଇଥାଏ ।

ଆପଣମାନେ ପଚାରିଥିଲେ ଯେ, ଦକ୍ଷ ହଠାତ୍ ଶିବଙ୍କ ଉପରେ ଏତେ କ୍ରୋଧ ପ୍ରକାଶ କଲେ କାହିଁକି ? ବ୍ରହ୍ମାଦି ଦେବଗଣ ଶିବଙ୍କ ସହିତ ଈର୍ଷାବଶରେ ସତୀଙ୍କୁ ଉପୃତ୍ତି କରାଇ-ଥିଲେ । ତେଣୁ ହୁଏତ ଏପରି ଅଘଟଣ ଘଟିଲା; କିନ୍ତୁ ପ୍ରକୃତରେ ତାହା ନୁହେଁ । ବ୍ରହ୍ମା

ଏପରି ଲୀଳା ରଚନା କରି ନଥିଲେ, ଶିବ ଏତେ ଖେଳ ଖେଳିଥାନ୍ତେ କାହିଁକି ? ସେ ବ୍ରହ୍ମାନନ୍ଦ ସୁଖରେ ନିମଗ୍ନ ରହି, ସଦାସର୍ବଦା ତପସ୍ୟାରେ ରତ ହୋଇଥାନ୍ତେ । ଏହା ଘଟି ନଥିଲେ ଶିବଭକ୍ତମାନେ ଉଦ୍ଧାର ପାଇ ନଥାନ୍ତେ । ଏଇଥିପାଇଁ ଶିବ ଏହି ଲୀଳା ସୃଷ୍ଟି କରିଥିଲେ ।

## ଛପ୍‌ପୟ୍

"ଶିବ ହୋଓୈ ମମ ନାଥ କରେଂ ବ୍ରତ ସତୀକୁମାରୀ ।
ବିଧିସନ ପୂଜି ଶିବ ପ୍ରକଟ ଭୟେ କହିଁ ଦକ୍ଷଦୁଲାରୀ ॥
ଦେଖି ତେଜ, ତପଶୀଲ ଶମ୍ଭୁକେ ମନ ଅତଭାଇଂ ।
ନିତ୍ୟ ଶକ୍ତି ନିଜ ଜାନି ଶିବା ସହଚରୀ ବନାଇଂ ॥
ଚନ୍ଦ୍ରଚନ୍ଦ୍ରିକା ପ୍ରଭ ରବି, ସମ ଅଭିନ୍ନ ଦୋଉ ଭୟେ ।
ଦକ୍ଷଯଜ୍ଞ କେ କଳହ ମେଂ ପ୍ରାଣ ସତୀ ନେ ତଜି ଦୟେ ॥"



# ବ୍ରହ୍ମାଙ୍କ ନିକଟରେ ଦେବଗଣଙ୍କ ପ୍ରବେଶ

"ଅଥ ଦେବଗଣାଃ ସର୍ବେ ରୁଦ୍ରାନୀକୈଃ ପରାଜିତାଃ ।
ଶୂଳ ପଟ୍ଟିଶ ନିସ୍ତ୍ରିଂଶଗଦାପରିଘମୁଦ୍‌ଗରୈଃ ॥
ସଂଚ୍ଛିନ୍ନ ଭିନ୍ନ ସର୍ବାଙ୍ଗାଃ ସର୍ତ୍ୱିକ୍ ସଭ୍ୟା ଭୟାକୁଳାଃ ।
ସ୍ୱୟମ୍ଭୁବେ ନମସ୍କୃତ୍ୟ କାର୍ତ୍ସ୍ନ୍ୟେନୈତନ୍ ନ୍ୟବେଦୟନ୍ ॥"

(ଭାଗବତ ୪।୬।୧।୨)

ଛପ୍‌ପୟ

"ସୁନକେ ଶୌନକ କହେଂ—କଥା ଅବ ସୂତ ସୁନାଓ ।
ପିଟିକୁଟି ଦେବନ କରେ୍ୟା କହା ସୋ ବାତ ବତାଓ ॥
ସୂତ କହେ ସବ ଦେବ ବହୁତ ବ୍ୟାକୁଲ ଘବରାଓଁତ ।
ଛିନ୍ନଭିନ୍ନ ସବ ଅଙ୍ଗ ଗୟେ ବିଧି ସନ ବିଲଲାଓଁତ ॥
ଘାଓ ଦିଖାଓଁହିଁ ରୋଇ ସବ, ଅଙ୍ଗ ଭଙ୍ଗ ଜୋ ଜୋ ଭୟୋ ।
ଦେଖି ଦଶା ଦୟନୀୟ ବିଧି, ଦେବନ କୂଁ ଢାଢ଼ସ ଦୟୋ ॥"

ଅର୍ଥାତ୍—ମୈତ୍ରେୟ କହୁଛନ୍ତି—"ହେ ବିଦୁର, ଶିବଗଣଙ୍କ ଦ୍ୱାରା ଦେବଗଣ ପରାସ୍ତ ହୋଇଗଲେ । ତ୍ରିଶୂଳ, ପଟ୍ଟିଶ, ଖଡ୍ଗ, ଗଦା, ପରିଘ ଓ ମୁଦ୍‌ଗର ଦ୍ୱାରା ଦେବଗଣଙ୍କ ଅଙ୍ଗ ପ୍ରତ୍ୟଙ୍ଗ କ୍ଷତବିକ୍ଷତ ହୋଇଗଲା । ସେମାନେ ଋତ୍ୱିକ୍ ଓ ଅନ୍ୟାନ୍ୟ ମୁନିମାନଙ୍କୁ ସଙ୍ଗରେ ନେଇ, ଭୟବ୍ୟାକୁଳ ଚିତ୍ତରେ ବ୍ରହ୍ମାଙ୍କଠାରେ ଉପସ୍ଥିତ ହୋଇ ତାଙ୍କୁ ନମସ୍କାର ଜଣାଇବା ସଙ୍ଗେ ସଙ୍ଗେ, ଆଦ୍ୟଅନ୍ତ ସମସ୍ତ ଘଟଣା ଶୁଣାଇଥିଲେ ।"

ଯେଉଁ ସଭାରେ ଜ୍ଞାନବୃଦ୍ଧ ବ୍ୟକ୍ତି ନଥାନ୍ତି ଏବଂ ଯେଉଁଠାରେ ପୂଜ୍ୟପୂଜାର ବ୍ୟତିକ୍ରମ କରାଯାଏ, ସେହି ସଭା କେବେହେଲେ ସଫଳ ହୁଏନାହିଁ । କେଉଁ ଭାବନା ମନରେ ରଖି କାର୍ଯ୍ୟ ଆରମ୍ଭ କରାଯାଉଛି, ସର୍ବଜ୍ଞ ପୁରୁଷମାନେ ତାହା ଭଲଭାବରେ ଜାଣି ପାରନ୍ତି । ସତ୍ ଉଦ୍ଦେଶ୍ୟରେ କାର୍ଯ୍ୟ କରାଗଲେ, ସେଠାରେ ଶ୍ରେଷ୍ଠପୁରୁଷମାନେ ଯାଇ ସମ୍ମିଳିତ ହୁଅନ୍ତି; କିନ୍ତୁ କାର୍ଯ୍ୟକ୍ରମରେ କୌଣସି ପ୍ରକାର ବିଶୃଙ୍ଖଳା ଘଟିବାର ଥିଲେ, ସେଠାକୁ କେତେକ ଲୋକ ଯାଆନ୍ତି ଏବଂ କେତେକ ବ୍ୟକ୍ତି ଯାଆନ୍ତି ନାହିଁ । ଦକ୍ଷଙ୍କର ଶିବବିରୋଧୀ ଯଜ୍ଞାନୁଷ୍ଠାନ ଦେଖି ବ୍ରହ୍ମା ଓ ବିଷ୍ଣୁ ସେଥିରେ ଅଂଶ ଗ୍ରହଣ କରି ନଥିଲେ । ସେ ଦୁହେଁ ବେଶ ଧାରଣା କରିଥିଲେ ଯେ, ଏହି ଉଦ୍ଦେଶ୍ୟମୂଳକ ତଥା ଈର୍ଷାପରାୟଣ ଯଜ୍ଞ କେବେହେଲେ ସଫଳ ହେବନାହିଁ । ସେ ଦୁହିଁଙ୍କ ଅନୁମାନ ସତ୍ୟରେ ପରିଣତ ହେଲା । ସେହି ଯଜ୍ଞାନୁଷ୍ଠାନ କେବଳ ବିଫଳ ହେଲାନାହିଁ, ଯଜ୍ଞର କର୍ତ୍ତା ମଧ୍ୟ ପ୍ରାଣହରାଇ ବସିଲେ ।

ଯଜ୍ଞବିଧ୍ୱଂସର ଆଖ୍ୟାୟିକା ଶୁଣି ଶୌନକ ପଚାରିଲେ—"ହେ ସୂତ, ଆମ୍ଭେମାନେ ସତୀଙ୍କ କାହାଣୀ ଶୁଣିଲୁ; କିନ୍ତୁ ଏହି ଯଜ୍ଞ ବିଧ୍ୱଂସ ହୋଇଯିବା ପରେ ଆଉ କ'ଣ କ'ଣ ଘଟିଲା, ତାହା ଆପଣ ଆମମାନଙ୍କୁ ବୁଝାଇ କହନ୍ତୁ ।"

ଏହା ଶୁଣି ସୂତ କହିଲେ—"ହେ ମହାଭାଗ ! ବିଦୁରଙ୍କ ପ୍ରଶ୍ନ ଶୁଣି ଯାହା ମୈତ୍ରେୟ କହିଥିଲେ, ସେହି ସମ୍ବାଦ ମୁଁ ଆପଣମାନଙ୍କୁ କହୁଛି । ଆପଣମାନେ ତାହା ମନୋଯୋଗପୂର୍ବକ ଶ୍ରବଣ କରନ୍ତୁ ।" ସୂତ ଦକ୍ଷର ଯଜ୍ଞବିଧ୍ୱଂସ କଥା କହିସାରିବା ପରେ, ସେହି ପ୍ରସଙ୍ଗର ଉତ୍ଥାପନ କରିଥିଲେ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର, ବୀରଭଦ୍ର ଦକ୍ଷଙ୍କ ଯଜ୍ଞଶାଳାରେ ଥିବା ସମସ୍ତଙ୍କୁ ପରାଭବ ଦେଇ ଶିବଗଣଙ୍କ ସହିତ କୈଳାସକୁ ଲେଉଟିଗଲେ । ଏହି ଧ୍ୱଂସ-ଲୀଳା ଦେଖି ଦେବତାମାନେ ହାୟ ହାୟ କରିବାକୁ ଲାଗିଲେ—ସେଠାରେ ଥିବା ସମସ୍ତେ କ୍ଷତ ବିକ୍ଷତ ହୋଇଥିଲେ । ସେମାନେ ଏକତ୍ରିତ ହୋଇ କହିବାକୁ ଲାଗିଲେ—"ଏହି ଶିବଗଣମାନେ ନିତାନ୍ତ ଉଦ୍ଧତ ଓ ଅସଭ୍ୟ ।" ଅନ୍ୟ କେତେକ କହିଲେ—"ଏହାର କିଛି ଗୋଟିଏ ଉପାୟ କରିବାକୁ ହେବ । ନଇଲେ ଏହି ଅରାଜକତା ସହ୍ୟ କରିବ କିଏ ସେ ?"

ଏହା ଶୁଣି ଅନ୍ୟମାନେ କହିଲେ—"ରାଜା ଯଦି ସ୍ୱୟଂ ଅନ୍ୟାୟ କରନ୍ତି, ତେବେ ଆଉ କାହା ଆଗରେ ଯାଇ ଗୁହାରି କରିବା ? ଶିବ ହେଉଛନ୍ତି—ଚରାଚର ବିଶ୍ୱର ସ୍ୱାମୀ । ସେ ଯେତେବେଳେ ଅନ୍ୟାୟ ଦ୍ୱନ୍ଦ୍ୱପାୟ ଅବଲମ୍ବନ କରୁଛନ୍ତି; ଆଉ ରକ୍ଷା କରିବ କିଏ ସେ ? ଏ ଘଟଣାର ପ୍ରତିବାଦ ଲାଗି ଏଇଲେ କୈଳାସକୁ ଗଲେ, ଶିବ ଆହୁରି କ୍ରୋଧିତ ହୋଇ

ଉଠିବେ । ଏଠାକୁ ଆସି ଶିବଗଣ ଯେଉଁ ଉତ୍ପାତ କରିଗଲେ, ଶିବଙ୍କ ସମ୍ମୁଖରେ ସେମାନଙ୍କୁ ସମ୍ଭାଳିବ କିଏ ସେ ? ତଥାପି ଶିବଙ୍କ ସମ୍ମୁଖରେ ଆମେମାନେ ଯାଇ ଗୁହାରି କରିବା ବ୍ୟତୀତ ଅନ୍ୟ କଅଣ ବା ଉପାୟ ଅଛି ଯେ ?"

ଏହା ଶୁଣି ଭୃଗୁ କହିଲେ—"ଦେବଗଣ, ଶିବ ହେଉଛନ୍ତି କ୍ରୋଧର ଅବତାର । ସେ ନିଜର ପ୍ରିୟାଙ୍କ ବିୟୋଗରେ ନିତାନ୍ତ କୁପିତ ହୋଇଥିବେ । ସେ ଯଦି କ୍ରୋଧବଶରେ ତାଙ୍କର ତୃତୀୟ ନେତ୍ର ଖୋଲିଦେବେ, ତେବେ ଆମେମାନେ ସେଇଠି ଧ୍ୱଂସ ହୋଇଯିବା ତେଣୁ ଆପଣମାନେ ମୋର ଶ୍ରେଷ୍ଠ କଥା ମାନନ୍ତୁ । ଚାଲନ୍ତୁ, ସମସ୍ତେ ପ୍ରଜାପତିଙ୍କ ନିକଟକୁ ଯିବା । ସେ ଯେଉଁ ଉପାୟ ବତାଇବେ, ଆମେମାନେ ତାହାହିଁ କରିବା । ବରଂ ତାଙ୍କୁ ସାଥିରେ ନେଇ ଆମେମାନେ କୈଳାସପୁରକୁ ଯିବା । କାରଣ, ସେ ସାଥିରେ ଥିଲେ, ଶିବଗଣମାନେ ଆମର କିଛି ଅନିଷ୍ଟ କରିପାରିବେ ନାହିଁ ।"

ଏହା ଶୁଣି ସମସ୍ତେ ଭୃଗୁଙ୍କ କଥାରେ ସମ୍ମତ ଜଣାଇ ବ୍ରହ୍ମାଙ୍କ ନିକଟକୁ ଗଲେ ।

ବ୍ରହ୍ମା ସବୁତକ ଘଟଣା ଆଗରୁ ଜାଣିଥିଲେ । ତାଙ୍କୁ ଭୂତ, ଭବିଷ୍ୟ ଓ ବର୍ତ୍ତମାନ କଥା ସବୁ କିଛି ଜଣା । ତଥାପି ଶିଷ୍ଟାଚାର ଦୃଷ୍ଟିରୁ ସେ ସମସ୍ତଙ୍କ ପ୍ରତି ସହାନୁଭୂତି ଜଣାଇ କହିଲେ—"ଆରେ...ତୁମମାନଙ୍କର ଏପରି ଦଶା କିପରି ହେଲା ?"

ଏହା ଶୁଣି ସର୍ବପ୍ରଥମେ ଭୃଗୁ ମହର୍ଷି ଅତ୍ୟନ୍ତ ଦୁଃଖିତ ହୋଇ କହିଲେ—"ମହାଶୟ, ଆପଣ ଆମମାନଙ୍କ ଦୁର୍ଦ୍ଦଶା ବିଷୟରେ ଆଉ କିଛି ପଚାରନ୍ତୁ ନାହିଁ । ଆମେମାନେ ଆପଣଙ୍କ ଭରସାରେ ସବୁକ୍ଷେତ୍ରରେ ଅଗ୍ରସର ହେଉଛୁ; କିନ୍ତୁ ଠିକ୍ ଅବସର ସମୟରେ ଆପଣ ପଛରେ ରହିଗଲେ ।"

ବ୍ରହ୍ମା ଅତ୍ୟନ୍ତ ଗମ୍ଭୀର ସ୍ୱରରେ କହିଲେ—"ସବୁ ବିଷୟ ପରିଷ୍କାର ଭାବରେ ନ କହିଲେ, ମୁଁ ଜାଣିବି କେମିତି ?"

ଭୃଗୁ ଟିକିଏ ଉତ୍ତେଜିତ ହୋଇ କହିଲେ—"ଆଉ ହେବ କଅଣ ? ଆମମାନଙ୍କ ଅବସ୍ଥା ଲକ୍ଷ୍ୟ କରି ଆପଣ କ'ଣ କିଛି ଅନୁମାନ କରିପାରୁ ନାହାନ୍ତି ? ତଥାପି ଶୁଣନ୍ତୁ— ଦକ୍ଷଙ୍କ ଯଜ୍ଞରେ ଶିବଙ୍କୁ ଯଜ୍ଞଭାଗ ଦିଆ ନ ଯିବାରୁ, ସତୀ ଶିବଙ୍କ ଇଚ୍ଛା ବିରୁଦ୍ଧରେ ଯଜ୍ଞସ୍ଥଳକୁ ଆସି ଶିବଙ୍କ ପ୍ରଶଂସା ଗାନ କରିବାକୁ ଲାଗିଲେ । ଦକ୍ଷ ଉଦାରତାର ସହିତ ସତୀଙ୍କୁ ସ୍ୱାଗତ ନକରି, ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ଏହା ଶୁଣି ସତୀ ସେହିଠାରେ ଯୋଗାଗ୍ନିରେ ଆତ୍ମାହୁତି ଦେଇଦେଲେ । ଏହି ସମ୍ବାଦ ପାଇ ଶିବ ନିଜର ପାର୍ଷଦମାନଙ୍କୁ ପଠାଇ ଦକ୍ଷର ଯଜ୍ଞ ଧ୍ୱଂସ କରିବା ସଙ୍ଗେ ସଙ୍ଗେ ଦକ୍ଷଙ୍କୁ ପ୍ରାଣରେ ବିନାଶ କରିଦେଲେ । ମୁଁ ଯଜ୍ଞରେ ପୁରୋହିତ ହୋଇଥିବାରୁ, ମୋର ନିଶ ଦାଢ଼ିତକ ସବୁ ଛିଣ୍ଡାଇ ପକାଇଲେ । ସୌଭାଗ୍ୟକୁ ମୁଁ ବଞ୍ଚିଗଲି । ଶିବ ଯଜ୍ଞକୁ ନ ଆସିବାରୁ ବିଷ୍ଣୁ ଓ ଆପଣ ମଧ୍ୟ ଯଜ୍ଞକୁ ଗଲେନାହିଁ ।

ବ୍ରହ୍ମା ଟିକିଏ ହସି ଦେଇ କହିଲେ—"ଏପରି ଭାବରେ ତମକୁ ପରାଭବ ଦେଇ ସେମାନେ କ'ଣ ପାଇଲେ ?"

ଏହା ଶୁଣି ଭୃଗୁ ଖୁବ୍ ରାଗିଯାଇ କହିଲେ—"ଆଉ ମିଳନ୍ତା କ'ଣ ନିଆଁ ନା ପାଉଁଶ ? ସେମାନେ ଉଦ୍ଦଣ୍ଡ, ଯାହାକୁ ଆଗରେ ପାଇଲେ ଆଚ୍ଛା କରି ସେମାନଙ୍କ ଓରିମାନ୍ ମେଣ୍ଟାଇନେଲେ । ଭଗଦେବତାଙ୍କ ଆଖି ଫୁଟାଇଦେଲେ, ପୂଷାଙ୍କର ଦାନ୍ତ ଝଡ଼ାଇ ଦେଇ ତାଙ୍କୁ ପାକୁଆ କରି ଦେଲେ । ଆଉ ଅନ୍ୟମାନଙ୍କ ହାତ ଗୋଡ଼ ଭାଙ୍ଗି ସାବାଡ଼ କରିଦେଲେ । ସେମାନେ ଯେଉଁ ଅତ୍ୟାଚାର ସେଠାରେ ଆରମ୍ଭ କରିଦେଲେ, ସେ ବିଷୟରେ ଆପଣ ଆଉ ଅଧିକ କିଛି ପଚାରନ୍ତୁ ନାହିଁ ।"

ବ୍ରହ୍ମା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଆଚ୍ଛା···ସେମାନେ କେବଳ ଦକ୍ଷଙ୍କୁ ବଧ କରିଛନ୍ତି ନା, ଆଉ କାହାକୁ ପ୍ରାଣରେ ମାରି ଦେଇଛନ୍ତି ?"

"ସେମାନେ ଅବଶ୍ୟ ଆଉ କାହାକୁ ବଧ କରି ନାହାନ୍ତି···" କହିଲେ ମହର୍ଷି ଭୃଗୁ—"କିନ୍ତୁ ସେମାନେ ଯେଉଁ ପରାଭବ ଦେଲେ, ତାହା ମୃତ୍ୟୁଠାରୁ ଅଧିକ ଯନ୍ତ୍ରଣାଦାୟକ । ବରଂ ଆମମାନଙ୍କୁ ସେମାନେ ପ୍ରାଣରୁ ମାରି ଦେଇଥିଲେ ଭଲ ହୋଇଥାଆନ୍ତା ।"

ବ୍ରହ୍ମା ଗମ୍ଭୀର ସ୍ୱରରେ କହିଲେ—"···କିନ୍ତୁ···ଆପଣମାନେ ପ୍ରଥମେ ଅନ୍ୟାୟ ଆଚରଣ କରିଛନ୍ତି । ଉନ୍ନତିକାମୀ ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି—ତେଜସ୍ୱୀ ବ୍ୟକ୍ତିମାନଙ୍କୁ ସନ୍ତୁଷ୍ଟ କରି ରଖିବା ।"

"ସେଥିରେ ଆମର ଦୋଷ କ'ଣ ? ସେ ଶ୍ୱଶୁର ଜ୍ୱାଇଁ କଳି କଲେ; କିନ୍ତୁ ମଝିରେ ଆମେମାନେ ମାଡ଼ ଖାଇଲୁ" କହିଲେ ମହର୍ଷି ଭୃଗୁ ।

ଏହା ଶୁଣି ବ୍ରହ୍ମା ଉତ୍ତେଜିତ ହୋଇ କହିଲେ—"ତୁମର ଦୋଷ ନାହିଁ କିପରି ? ତୁମେମାନେ ଦକ୍ଷକୁ ଅତ୍ୟଧିକ ପ୍ରଶଂସା କରି ତାକୁ ଆକାଶରେ ବସାଇ ଦେଲ । ତୁମେମାନେ ଯଦି ତାକୁ ସମର୍ଥନ କରି ନଥା'ନ୍ତ, ତେବେ ସେ କେବେ ହେଲେ ନିଜ ଯଜ୍ଞରେ ଶିବଙ୍କୁ ଅପମାନିତ କରିବାକୁ ସାହସ କରନ୍ତା ନାହିଁ । ତୁମେମାନେ ଦକ୍ଷର ବିଧି ବିଧାନହୀନ ଯଜ୍ଞକୁ ଛାଡ଼ି ଚାଲିଗଲ ନାହିଁ କାହିଁକି ? ମୁଁ ଜାଣେ, ତୁମେମାନେ ଅର୍ଥର ଲୋଭରେ ଦକ୍ଷକୁ ସମର୍ଥନ କରିଛ । ଭଗବାନ୍ ଶଙ୍କର କେବଳ ଗୋଟିଏ ଯଜ୍ଞଭାଗ ପାଇବାର ଅଧିକାରୀ ନୁହନ୍ତି, ସେ ସମଗ୍ର ସୃଷ୍ଟି ଯଜ୍ଞର ସ୍ୱାମୀ । ତୁମମାନଙ୍କ ପରାମର୍ଶରେ ଦକ୍ଷ ଶିବଙ୍କୁ ଯଜ୍ଞଭାଗ ନ ଦେଇ ତାଙ୍କୁ ଅପମାନିତ କଲେ । ତେଣୁ ତୁମେମାନେ ପରାଭବ ପାଇବ ନାହିଁ ତ ଆଉ କିଏ ସେ ଦଣ୍ଡ ପାଇବ ?"

ଭୃଗୁ ଅତ୍ୟନ୍ତ ବିନୀତ ହୋଇ କହିଲେ—"ମହାଭାଗ ! ଯାହା ହେବାର ତ ହୋଇ ଗଲାଣି, ଏଣିକି ଆପଣ କିଛି ଗୋଟିଏ ଉପାୟ ବତାଇ ଦିଅନ୍ତୁ । ଯାହା ଫଳରେ ଆଉ

ଅଧିକ ଉପଦ୍ରବ ଯେପରି ନ ହୁଏ । ଶିବ ଯଦି ଅ.ହୁରି କ୍ରୋଧ ପ୍ରକାଶ କରନ୍ତି, ତେବେ ଆମେମାନେ ଜୀବନ ପାଇବୁ ନାହିଁ ।"

ଏହା ଶୁଣି ବ୍ରହ୍ମା ଅତ୍ୟନ୍ତ ଶାନ୍ତ ସ୍ୱରରେ କହିଲେ—"ତୁମେମାନେ ଜାଣ, ଶିବ ହେଉଛନ୍ତି—ଆଶୁତୋଷ । ତୁମେମାନେ ନିଜ ନିଜର ମନରୁ କଳୁଷ ତ୍ୟାଗ କରି ଶିବଙ୍କର ଶରଣ ପଶ; ସେ ତୁମମାନଙ୍କୁ ନିଶ୍ଚୟ କ୍ଷମା ପ୍ରଦାନ କରିବେ ! ତାଙ୍କ ମନରେ ରାଗ, ଦ୍ୱେଷ ଓ ଅହଙ୍କାର ଆଦୌ ହେଲେ ନାହିଁ । ସେ ସଦାଶିବ ଓ ଶଙ୍କର ।"

ଭୃଗୁ ବ୍ରହ୍ମାଙ୍କ ମନ୍ତବ୍ୟର ପ୍ରତିବାଦ କରି କହିଲେ —"ତାଙ୍କ ମନରେ ଯଦି ରାଗ, ଦ୍ୱେଷ ଓ ଅହଙ୍କାର ନାହିଁ; ସେ ଆମମାନଙ୍କୁ ଏପରି ପରାଭବ ଦେଲେ କାହିଁକି ?"

ଏହାର ଉତ୍ତରରେ କହିଲେ ବ୍ରହ୍ମା—"ଦେଖ, ଏକା ସାଥିରେ କେତୋଟି କାରଣ ଆସି ଉପସ୍ଥିତ ହୋଇଗଲା । ପ୍ରଜାପତିମାନଙ୍କ ଯଜ୍ଞରେ ମୋର ଆଗରେ ଦକ୍ଷ ଶିବଙ୍କୁ ନିନ୍ଦା କରି ଏଣ୍ତୁ ତେଣ୍ତୁ କେତେ କଥା କହିଗଲା । ଶିବ ସବୁ ଶୁଣି ନ ଶୁଣିଲା ପରି ରହିଗଲେ । ତା'ପରେ ସେ ସବୁ ଭୁଲିଗଲେ । ତା'ପରେ ଦକ୍ଷ ନିଜେ ଗୋଟିଏ ଯଜ୍ଞ ଆରମ୍ଭ କରି ସେଥିରେ ଶିବଙ୍କୁ ଯଜ୍ଞଭାଗ ନ ଦେଇ ଗୋଟିଏ ଅନୀତି ଆଚରଣ କଲା । ଶିବ ତାକୁ ମଧ୍ୟ ମନରେ ଧରିଲେ ନାହିଁ । ଏପରି ପରିସ୍ଥିତିରେ ତାଙ୍କ ମନରେ କ୍ରୋଧ ଜାତ ହେବାର କଥା । ତା'ପରେ ତାଙ୍କର ପ୍ରାଣପ୍ରିୟା ସତୀ ସେହି ଅପମାନରେ ଯଜ୍ଞବେଦି ନିକଟରେ ପ୍ରାଣତ୍ୟାଗ କଲେ । ଏ ପରିସ୍ଥିତିରେ କାହା ମନରେ କ୍ରୋଧ ଜାତ ନ ହେବ କହିଲ ? ତା'ପରେ ତୁମେମାନେ ମଧ୍ୟ ଅନୀତି ଆଚରଣ କରି ତାଙ୍କ କ୍ରୋଧକୁ ଆହୁରି ଉତ୍ତେଜିତ କରାଇଲ ।"

ଭୃଗୁ ମହର୍ଷି ସବୁ ଶୁଣି କହିଲେ—"ହେଲା, ଆମର ସବୁ ଦୋଷ ହୋଇଛି । ଏବେ କ'ଣ ହେବ କହିଲେ ? ଦକ୍ଷଙ୍କୁ କୌଣସିମତେ ବଞ୍ଚାଇ ଦିଅନ୍ତୁ । ତା'ହେଲେ ଯଇ ବୈଦିକ ବିଧିବିଧାନ ସହିତ ଯେଉଁ ଯଜ୍ଞ ହେଉଥିଲା, ତାହା ପୂର୍ଣ୍ଣ ହୋଇ ପାରିବ । ଆପଣ ଏହାର ବ୍ୟବସ୍ଥା କରନ୍ତୁ ।"

ଏହା ଶୁଣି କହିଲେ ବ୍ରହ୍ମା—"ଭାଇ, ଏହା ତ ମୋ' ସାମର୍ଥ୍ୟର ବାହାରେ । ଏହା କେବଳ ଭଗବାନ୍ ଶଙ୍କର ହିଁ କରାଇ ପାରିବେ । ତାଙ୍କର ଶକ୍ତି ଅପରିମେୟ । ତାଙ୍କର ସଙ୍କେତରେ ବିଶ୍ୱ ବ୍ରହ୍ମାଣ୍ଡରେ ସବୁ କିଛି ଚାଲିଛି । ଭଗବାନ୍ ବିଷ୍ଣୁ ମଧ୍ୟ ଶିବଙ୍କ ଶକ୍ତିର ଅଳକୂଳ ପାଉ ନାହାନ୍ତି । ସେ ପରିସ୍ଥିତିରେ ଆମେ ତୁମେ ମିଶିଲେ କ'ଣ ଅବା କରି ପାରିବା ? ଯଦି ତୁମେମାନେ ଚାହୁଁଥାଅ ଯେ, ଯଜ୍ଞର ବିଧିରକ୍ଷା କୌଣସିମତେ ଶେଷ ହୋଇ ତା'ର ପୂର୍ଣ୍ଣାହୁତି ହେଉ; ତେବେ ସମସ୍ତେ ମିଳିତ ହୋଇ ଶିବଙ୍କ ଚରଣାରବିନ୍ଦରେ ଶରଣ ପଶ । ତାଙ୍କଠାରେ କ୍ଷମାଭିକ୍ଷା କଲେ, ସେ ସବୁ କିଛି କରି ପାରିବେ । ନଇଲେ ଶିବ

ଯଦି ଆହୁରି ଘଗିଯାଇ ନିଜର ତୃତୀୟ ନେତ୍ର ଖୋଲି ଦେବେ, ତେବେ ବିଶ୍ୱବ୍ରହ୍ମାଣ୍ଡ ଜଳି ପୋଡ଼ି ଭସ୍ମ ହୋଇଯିବ ।"

ଭୃଗୁ ବ୍ରହ୍ମାଙ୍କ ମନ୍ତବ୍ୟକୁ ହୃଦୟଙ୍ଗମ କରି କହିଲେ—"ମହୋଦୟ ! ତାହା କରିବାକୁ ଆମର ଆପତ୍ତି ନାହିଁ; କିନ୍ତୁ ପ୍ରକୃତରେ ଆମେ ଭୟଭୀତ ହୋଇଯାଇଛୁ । ଆପଣ ଆମ ସହିତ ଚାଲନ୍ତୁ । ନଇଲେ ଏକାକୀ ଯିବାପାଇଁ ଆମକୁ ଭୟ ଲାଗୁଛି । ସେ ହୁଏତ କିଛି କରି ନ ପାରନ୍ତି; କିନ୍ତୁ ତାଙ୍କର ଯେଉଁ ପାର୍ଷଦମାନେ ଅଛନ୍ତି, ସେମାନେ କିଳିକିଳା ରାବ ଦେଇ ଯଦି ପୁଣି ଆମ ଉପରେ ଆକ୍ରମଣ ଆରମ୍ଭ କରିଦିଅନ୍ତି, ତେବେ ଆମର ଦୁର୍ଗତି କହିଲେ ସରିବ ନାହିଁ ।"

ଏହା ଶୁଣି ବ୍ରହ୍ମା ହସି ହସି କହିଲେ—"ହେଉ, ତୁମେମାନେ ଏତେ ଭୟ କରନାହିଁ । ଯାହା ହୋଇଯିବାର କଥା ହୋଇଗଲାଣି । ଏଥର ଆଉ ତୁମ ଉପରେ ଆକ୍ରମଣ ହେବନାହିଁ । ଚାଲ, ମୁଁ ତୁମମାନଙ୍କ ସହିତ ଯାଉଛି ।"

ମୈତ୍ରେୟ ମୁନି କହିଲେ—"ହେ ବିଦୁର, ଏତିକି କହି ବ୍ରହ୍ମା ସମସ୍ତ ଦେବତା ଓ ଋଷିଙ୍କ ସହିତ ମିଳିତ ହୋଇ, ଶିବଙ୍କ ନିକଟରେ ପହଞ୍ଚିଲେ ।"

## ଛପ୍‌ପୟ

"ବ୍ରହ୍ମା ବୋଲେ ବହୁତ ବୁରେ ତୁମ ସବନେ କୀନ୍ହୋ ।
ଯଜ୍ଞନୀ କେ ଜୋ ଈଶ ତିନହୁଁ ମଖ ଭାଗ ନ ଦୀନ୍ହୋ ॥
କିନ୍ତୁ ଭଈ ସୋ ଭଈ ଶମ୍ଭୁକୋ ଯାଇ ମନାଓ ।
ଚରନ ନମହୁଁ ସବ ପରୌ ଯଜ୍ଞ ପୂରେ କରଓ୍ୱା ॥
ଋଷି ମୁନି ବୋଲେ କୃପାନିଧି ହମ୍‌ସବ୍ ଶିବତେଁ ବହୁ ଡରେଂ ।
ହମ୍ ସବକୋ ସଙ୍ଗ ଲୈ ଚଲୈଁ, ଦାରୁଣ ଦୁଖ ସବ୍‌କୋ ହରେଂ ॥"



# ଶିବଙ୍କ ନିକଟକୁ ଦେବତାଙ୍କ ଗମନ

"ସ ଇତ୍‌ଥମାଦିଶ୍ୟ ସୁରାନଜସ୍ତୈଃ
ସମନ୍ୱିତଃ ପିତୃଭିଃ ସପ୍ରଜେଶୈଃ ।
ଯଯୌ ସ୍ୱଧିଷ୍ଣ୍ୟାନ୍ନିଲୟଂ ପୁରଦ୍ୱିଷଃ
କୈଳାସମଦ୍ରିପ୍ରବରଂ ପ୍ରିୟଂ ପ୍ରଭୋଃ ॥"

(ଭାଗବତ ୪।୬।୮)

**ଛପ୍‌ପୟ**

"ନାନ ସବକୀ ବାତ ଚଲେ ବଧି ଗିର କୈଲାସା ।
ଜହଁ ଫୂଲେ ବର ବୃକ୍ଷ କେତକୀ ପନସ ପଲାସା ॥
ଦେବ ଯକ୍ଷ ଗନ୍ଧର୍ବ ସିଦ୍ଧ ସବ ଶିବକୂଁ ସେବେଂ ।
ପଶୁପତି ଜନକୂଁ ସଦା ମନୋବାଞ୍ଛିତ ଫଲ ଦେବେଂ ॥
ବାରହ ମାସ ବସନ୍ତ ଜହଁ କୁହୂ କୁହୂ କୋକିଲ କରହିଁ ।
ବହୁରେଂ ଖଗମୃଗ, ବିହଁଗ ବର କରି କଲରବ ମନକୂଁ ହରହିଁ ॥"

ଅର୍ଥାତ୍‌—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଭଗବାନ୍ ବ୍ରହ୍ମା ଦେବଗଣ, ପିତର ଓ ପ୍ରଜାପତିମାନଙ୍କୁ ଏହିପରି ଭାବରେ ବୁଝାଇ ସୁଝାଇ ତଥା ପ୍ରବୋଧନା ଦେଇ ଶିବଙ୍କର ପରମ ପ୍ରିୟସ୍ଥାନ କୈଳାସ ପର୍ବତକୁ ନେଇ ଯାଇଥିଲେ ।"

ଯେଉଁମାନେ ସୌନ୍ଦର୍ଯ୍ୟର ଉପାସକ ସେମାନେ ଶୈଳରାଜ ହିମାଳୟର ଦୃଶ୍ୟ ଅବଲୋକନ କରିବା ଉଚିତ । ହିମାଳୟର ଉତ୍ତୁଙ୍ଗ ଶିଖର ନିଜର ସୌନ୍ଦର୍ଯ୍ୟ ବିକୀରଣ କରି ସମଗ୍ର ବିଶ୍ୱକୁ ପରିଶୋଭିତ କରୁଛି । କୈଳାସ, ଲୋକପାଳ, ସତ୍ପଥ, କାକଭୁଷୁଣ୍ଡି ଆଦି ଶିଖରଗୁଡ଼ିକ ହିମାଚ୍ଛାଦିତ ମୁକୁଟ ପିନ୍ଧି ବିଶ୍ୱ ସମ୍ମୁଖରେ ଉଦ୍ଭାସିତ ହେଉଛନ୍ତି । ସେଠାକାର ନୀରବ ନିସ୍ପନ୍ଦ ବାତାବରଣ, ଶିଖର ଗୁଡ଼ିକର ମହାନତାକୁ ଅତ୍ୟନ୍ତ ଗୌରବାନ୍ୱିତ କରୁଛି । ଯଦି ଦେବରାଜ ଇନ୍ଦ୍ର ସେମାନଙ୍କର ପକ୍ଷ ଛେଦନ କରି ନଥାନ୍ତେ, ତେବେ ଆମେମାନେ ସେମାନଙ୍କୁ ଆମର ଶାନ୍ତି ସ୍ୱସ୍ତ୍ୟୟନ କାର୍ଯ୍ୟରେ ନିମନ୍ତ୍ରଣ କରନ୍ତେ, ସେମାନେ ଆସି ହିମାଚ୍ଛାଦିତ ସ୍ୱଚ୍ଛ ପରିବେଶ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆମ ଉତ୍ସବଗୁଡ଼ିକୁ ଆନନ୍ଦମୁଖର କରାଇ ପାରନ୍ତେ । ସେହି କୋଳାହଳମୟ ବାତାବରଣରେ ଆମ ଶିଶୁମାନେ ସେମାନଙ୍କ ହିମମୁକୁଟକୁ ସ୍ପର୍ଶ କରି କେତେ ଆନନ୍ଦ ଅନୁଭବ କରନ୍ତେ । ଆହା···, କେଡ଼େ ଆନନ୍ଦମୁଖର ହୋଇ ଉଠନ୍ତା ସେ ଅନୁଭୂତି କିନ୍ତୁ ଶଚୀପତି ଇନ୍ଦ୍ର କେଡ଼େ ଅନ୍ୟାୟ କରିଛନ୍ତି ସତେ ? ଆମେମାନେ ସେଠାକୁ ଯିବାପାଇଁ ସାହସ କରିପାରୁ ନଥାଇ । ସେଠାକାର ପ୍ରଳୟଙ୍କରୀ ହିମପାତ ତଥା ତୁଷାରପାତ ଲକ୍ଷ୍ୟକରି ଆମ ମନରେ ନିକୁଆ ଭୟ ସୃଷ୍ଟି କରୁଛି । ଏକେତ ବରଫର ଭୟ, ଦ୍ୱିତୀୟରେ ଆମ ଉଦରର ସର୍ବଗ୍ରାସୀ କ୍ଷୁଧା ସେଠାକୁ ଯିବାପାଇଁ ଆମର ମାର୍ଗରୋଧ କରୁଛି । ଯଦି ଆମ ମନରେ ସାଂସାରିକ ବାସନାର ମୋହ ନଥାନ୍ତା, ତା'ହେଲେ ଆମେ କ'ଣ ସେହି ଅନୁପମ ସୌନ୍ଦର୍ଯ୍ୟର ଅବଲୋକନରୁ ବଞ୍ଚିତ ହୋଇ ରହିଥାଆନ୍ତୁ । ସେଠାକାର ପ୍ରଶାନ୍ତ, ଅନୁପମ ସୌନ୍ଦର୍ଯ୍ୟ ତଥା ଅଲୌକିକ ଦୃଶ୍ୟକୁ ଛାଡ଼ି ଆମେ କାହିଁକି ଅବା ଏହି ସଂସାରର କୋଳାହଳମୟ ବାତାବରଣକୁ ଆଦରି ନେଇ ଥାଆନ୍ତୁ ଯେଉଁମାନେ ନଗାଧିରାଜଙ୍କ କୈଳାସ ଶିଖର ଅବଲୋକନ କରିଛନ୍ତି । ବାସ୍ତବିକ ସେମାନେ ଧନ୍ୟ । ଏବେ ଶୁଣାଯାଉଛି; କୈଳାସ ପର୍ବତର ଆହୁରି ଆଗକୁ ଦିବ୍ୟ କୈଳାସ ବୋଲି ଗୋଟିଏ ଶିଖର ରହିଛି । କୈଳାସର ଶୋଭା ଯେତେବେଳେ ଏତେ ଅତୁଳନୀୟ, ସେପରି ସ୍ଥଳେ ଦିବ୍ୟକୈଳାସ ଅଧିକ ଶୋଭାଶାଳୀ ହୋଇଥିବ ସେଠାରେ ନିର୍ଦ୍ଧିତ ଭାବରେ ଦେବତା, ସିଦ୍ଧ, ଗୃହସ୍ଥମାନେ ବାସ କରୁଥିବେ । ସେଠାରେ ମନୁଷ୍ୟମାନଙ୍କ ପାଦଚିହ୍ନ କେବେହେଲେ ପଡ଼ି ନଥିବ !

ମୈତ୍ରେୟ ମୁନି କହିଲେ—"ହେ ବିଦୁର, ପିତାମହଙ୍କୁ ସମ୍ମୁଖରେ ରଖି ଦେବଗଣ ନିଜନିଜର ବିମାନ ଆରୋହଣ କରି କୈଳାସ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ବ୍ରହ୍ମ-ଲୋକକୁ ସେମାନେ ଆସି ତପଲୋକରେ ପହଞ୍ଚିଲେ । ସେଠାକାର ମୁନିଋଷିଗଣ ବ୍ରହ୍ମାଦି ଦେବଗଣଙ୍କୁ ସ୍ୱାଗତ ଜଣାଇ, ସେଠାରେ କିଛି ସମୟ ରହିବା ଲାଗି ଅନୁରୋଧ କଲେ । ପିତାମହ କାର୍ଯ୍ୟର ଗୁରୁତ୍ୱ ସମ୍ବନ୍ଧରେ ସେମାନଙ୍କୁ ବୁଝାଇ ସେଠାରୁ ଶୀଘ୍ର ଆଗେଇଗଲେ । ଏହିପରି ଭାବରେ ଜନଲୋକ ଓ ମହଲୋକର ଅଧିବାସିଗଣ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ; କିନ୍ତୁ କ୍ଷତବିକ୍ଷତ ଦେବ ଓ ଋଷିଗଣ ସେ ପ୍ରକାର ସମ୍ବର୍ଦ୍ଧନାକୁ ଆନନ୍ଦର

ସତ୍ୱତ ଗ୍ରହଣ କଲେ ନାହିଁ । ସେମାନେ ଇନ୍ଦ୍ରଲୋକ ପାଖଦେଇ ସୁମେରୁ ପର୍ବତର ଉତ୍ତର-କୋଣସ୍ଥିତ ମାର୍ଗରେ କୈଳାସ ଆରୋହଣ କଲେ ।

କୈଳାସ ଶିଖରର ଶୀତଳ ବାୟୁ ବହି ଆସି ସମସ୍ତଙ୍କ ପୀଡ଼ା ଉପଶମ କରିଦେଲା । ସେମାନେ କୈଳାସର ଦୃଶ୍ୟ ଅବଲୋକନ କରି ଆନନ୍ଦରେ ବିଭୋର ହୋଇ ଉଠିଲେ । ସେମାନେ କିଛି ସମୟ ସେଠାରେ ଅପେକ୍ଷା କରି ସ୍ଥିର ଦୃଷ୍ଟିରେ କୈଳାସର ମନୋରମ ସୌନ୍ଦର୍ଯ୍ୟ ଅବଲୋକନ କଲେ । ସେମାନେ ନିଜ ନିଜର ବିମାନରୁ ଓହ୍ଲାଇ ଶିବଙ୍କ ସମ୍ମାନ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ପାଦରେ ଚାଲିଚାଲି ଅଗ୍ରସର ହେଲେ । ସେଠାରେ ସେମାନେ ଅନେକ ସମାଧି ମଗ୍ନ ସାଧୁମାନଙ୍କୁ ଦେଖିଲେ । ସେମାନଙ୍କୁ ଲକ୍ଷ୍ୟ କରି ମୁନିମାନେ ପଚାରିଲେ—"ବ୍ରହ୍ମଦେବ, ଏହି ସାଧୁମାନେ ନିଜର ଉଗ୍ରସାଧନା ବଳରେ ସିଦ୍ଧିଲାଭ କରିଛନ୍ତି ନା, ଏହାର ଅନ୍ୟ କୌଣସି ରହସ୍ୟ ଅଛି ?"

ବ୍ରହ୍ମା କହିଲେ—"ଦେଖ, ଏଠାରେ କେତେ ପ୍ରକାର ସିଦ୍ଧ ଅଛନ୍ତି । ସେମାନଙ୍କ ମଧ୍ୟରେ ଅନେକ ଭେଦ ରହିଛି । ସମସ୍ତେ ମଧ୍ୟ ଏକ ପ୍ରକାର ସାଧନା କରନ୍ତି ନାହିଁ ।"

ଏହା ଶୁଣି କହିଲେ ମୁନିଗଣ—"ଏଇ ସମ୍ମୁଖରେ ଦେଖା ଯାଉଥିବା ସୁନ୍ଦର ଚେହେରାର ସିଦ୍ଧଗଣ କେଉଁ ଧରଣର ସାଧନାରେ ମାତିଛନ୍ତି ?"

ବ୍ରହ୍ମା କହିଲେ—"ଏମାନେ ହେଉଛନ୍ତି—'ଉପଦେବ' ଜାତିର ସିଦ୍ଧ ସାଧକ । ଏମାନଙ୍କ ଜାତିରେ ଯେଉଁ ବ୍ୟକ୍ତି ଜନ୍ମ ହୁଅନ୍ତି, ସେମାନେ ଜନ୍ମରୁ ସିଦ୍ଧ । ସେମାନେ ମଧ୍ୟ ସ୍ୱାଭାବିକ ସିଦ୍ଧି ହାସଲ କରନ୍ତି । ଯେପରି ପକ୍ଷୀମାନେ ଜନ୍ମରୁ ଉଡ଼ିବା ଶିଖିଥା'ନ୍ତି ଓ ଜଳଚର ପ୍ରାଣୀମାନେ ଜନ୍ମରୁ ପହଁରିବା ଶିଖନ୍ତି, ଠିକ୍ ସେହିମାନଙ୍କ ପରି ଏହି ସିଦ୍ଧମାନେ ଜନ୍ମ ହେବା ପରେ ପରେ ସିଦ୍ଧସାଧନରେ ବ୍ରତୀ ହୁଅନ୍ତି । ଏମାନେ ଦେଖିବାକୁ ଖୁବ୍ ସୁନ୍ଦର । ତୁମେମାନେ ଲକ୍ଷ୍ୟ କରୁଛ ତ, ଏମାନଙ୍କ ଚେହେରା କିପରି ଅଗ୍ନି ତୁଲ୍ୟ ।"

ଏହା ଶୁଣିବା ପରେ ଦେବତା ଓ ପିତରମାନେ କିଛି ଦୂର ଆଗେଇ ଯାଇ ଆଉ ଗୋଟିଏ ପ୍ରକାରର ସିଦ୍ଧମାନଙ୍କୁ ଦେଖି ପଚାରିଲେ—"ପ୍ରଭୋ, ଏମାନେ କେଉଁ ଧରଣର ସିଦ୍ଧ ଯେ ?"

ଏହା ଶୁଣି କହିଲେ ବ୍ରହ୍ମା—"ଆପଣମାନେ ଜାଣିଥିବେ, କୈଳାସରେ ଗୋଟିଏ ପ୍ରକାର ଲତା ମିଳେ । ଏମାନେ ସେହି ଲତାର ମୂଳ ସେବନ କରନ୍ତି । ଏମାନେ ଗୋଟିଏ ଶୁଭ ମୁହୂର୍ତ୍ତରେ ସେହି ମୂଳକୁ ଆଣି, ତାକୁ ଛେଚି କୁଟି ସେଥିରେ ଛୋଟ ଛୋଟ ବଟିକା ନିର୍ମାଣ କରନ୍ତି । ସେହି ବଟିକାକୁ ସେବନ କରିବାମାତ୍ରେ ଏମାନେ ସିଦ୍ଧ ପାଲଟି ଯାଆନ୍ତି । ସେ ଔଷଧର ରସ ଏମାନେ ପାଦରେ ଲେପି ପାଣି ଉପରେ ଅନାୟାସରେ ଚାଲିପାରନ୍ତି ।

ସେହି ଲତାର ଚେରକୁ ମାଟିବେ ପକାଇ ଏମାନେ ପକ୍ଷୀମାନଙ୍କ ପରି ଆକାଶରେ ଉଡ଼ି ଯାଆନ୍ତି । ସେହି ଲତାର ରସ ଆଖିରେ ଲଗାଇଲେ, ଏମାନେ ବିଶ୍ୱବ୍ରହ୍ମାଣ୍ଡର ସବୁ କିଛି ଦେଖି ପାରନ୍ତି ।

"ଆପଣମାନେ ଜାଣିଥିବେ ପୃଥିବୀର ଅନନ୍ତ ଗର୍ଭରେ ଅନେକ ଧନରତ୍ନ ପୋତା ହୋଇ ରହିଛି । ଧନରତ୍ନର ଅନ୍ୟନାମ 'ବସୁ' । ସେହି ବସୁକୁ ଧାରଣ କରିଥିବାରୁ ପୃଥିବୀର ଅନ୍ୟନାମ ବସୁନ୍ଧରା । ଏହି ସିଦ୍ଧମାନେ ସେହି ଲତା ସାହାଯ୍ୟରେ ପୃଥିବୀର ଯେ କୌଣସି ସ୍ଥାନରୁ ନିଜ ଇଚ୍ଛାନୁସାରେ 'ବସୁ' ସଂଗ୍ରହ କରନ୍ତି । ତେଣୁ ଏମାନଙ୍କ ନିକଟରେ କୌଣସି ଦ୍ରବ୍ୟ ଅଭାବ ହୁଏ ନାହିଁ । ସେହି ଔଷଧ ସାହାଯ୍ୟରେ ଏମାନେ ପରମ ସିଦ୍ଧି ଲାଭ କରିଛନ୍ତି ।"

ବ୍ରହ୍ମାଙ୍କ କଥା ଶୁଣି ମୁନିମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କ ମଧ୍ୟରେ ଯେଉଁମାନେ ସାଧନ ମାର୍ଗରେ ବିଶେଷ ସିଦ୍ଧି ପ୍ରାପ୍ତ ହୋଇ ନଥିଲେ, ସେମାନେ ଭାବିଲେ— 'ଆମକୁ ଏହି ଲତା ମିଳିଗଲେ, ଆମେ ମଧ୍ୟ ଏଇମାନଙ୍କ ପରି ଅଶେଷ ସିଦ୍ଧିରେ ଭୂଷିତ ହୋଇ ପାରନ୍ତୁ ।'

ଆଉ କିଛି ଦୂର ଅଗ୍ରସର ହେବା ପରେ ସେମାନେ ଗୋଟିଏ ଦଳ ସିଦ୍ଧଙ୍କୁ ଦେଖିଲେ । ସେମାନଙ୍କ ମଧ୍ୟରୁ କେତେକ ଗୋଟିଏ ଗୋଡ଼ରେ ଛିଡ଼ା ହୋଇଥିଲେ; କେତେକ କଣ୍ଟା ବିଛାଇ ତା'ଉପରେ ଶୋଇଥିଲେ । ଅନ୍ୟମାନେ ନିଆଁ ଜାଳି ସେଥିରୁ ଧୂମପାନ କରୁଥିଲେ । ଆଉ କେତେକ ନଦୀର ଶୀତଳ ଜଳରେ ଛିଡ଼ା ହୋଇ ତପସ୍ୟାରେ ରତ ଥିଲେ । କେତେକ ସିଦ୍ଧ ଓଦା ଲୁଗା ପିନ୍ଧି ଧ୍ୟାନରେ ମଗ୍ନ ଥିଲେ, କେତେକ ବଲ୍‌କଲ ଧାରଣ କରିଥିଲେ; କେତେକ ଉଲଗ୍ନ ଥିଲେ ଏବଂ ଅନ୍ୟ କେତେଜଣ ଭସ୍ମ ବୋଳି ହୋଇ ବସିଥିଲେ । କେହି କେହି ଗଛରେ ଗୋଡ଼ ଛନ୍ଦି ଦେଇ ତଳକୁ ମୁଣ୍ଡ କରି ତପସ୍ୟାରେ ମଗ୍ନଥିଲେ । ଅନ୍ୟ କେତେଜଣ ପଞ୍ଚାଗ୍ନି ଜାଳି ଜପ ସାଧନ କରୁଥିଲେ । କେହି ତଳେ ପଡ଼ିଥିବା ଶସ୍ୟଗୁଡ଼ିକୁ ବାଛୁଥିଲେ ଏବଂ କେହି ଫଳ ଫୁଲ ସଂଗ୍ରହ କରୁଥିଲେ । କେହି ପ୍ରାଣାୟାମରେ ରତ ହୋଇଥିଲେ ଓ ଅନ୍ୟ କେତେଜଣ ନିଜ ଅଙ୍ଗକୁ କାଟି କାଟି ପକ୍ଷୀମାନଙ୍କୁ ଖୁଆଉ ଥିଲେ ।

ଏହିପରି ଭାବରେ ହଠଯୋଗରେ ବ୍ରତୀ ସାଧକମାନଙ୍କୁ ଦେଖି ପିତୃଗଣ ପଚାରିଲେ—"ପ୍ରଭୋ, ଏମାନେ କେଉଁ ଧରଣର ସିଦ୍ଧ ?"

ପିତୃଗଣଙ୍କୁ ଉତ୍ତର ଦେଇ କହିଲେ ବ୍ରହ୍ମା—"ଏମାନେ ହେଉଛନ୍ତି—ତପଃସିଦ୍ଧ । ଏମାନେ ତପସ୍ୟାରେ ସିଦ୍ଧ ହୋଇଛନ୍ତି । ଏହି ସନ୍ନ୍ୟାସୀଗଣ ଶରୀରକୁ କ୍ଲେଶ ଦେଇ ତପସ୍ୟା କରୁଛନ୍ତି । କାରଣ ମନୁଷ୍ୟ କାୟକ୍ଲେଶ ସହ୍ୟ କରିପାରନ୍ତି ନାହିଁ । ବିଶେଷତଃ

ପାପିନୀ କ୍ଷୁଧାକୁ ଆୟତ୍ତ କରିବା ଆଦୌ ସମ୍ଭବ ନୁହେଁ । ଏମାନେ ସେହି କ୍ଷୁଧା ଉପରେ ବିଜୟ ହାସଲ କରିଛନ୍ତି । ତେଣୁ ସେମାନେ ହଠଯୋଗ ଆରମ୍ଭ କରି ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କରୁଛନ୍ତି ।"

ତହୁଁ ମୁନିମାନେ ପଚାରିଲେ—"ଏ'ପ୍ରକାର ହଠଯୋଗ ତ 'ତାମସ' ତପ । ଏହା ଫଳରେ ଅଜ୍ଞାନ ପ୍ରକଟ ହେଉଛି ।"

"ତାମସ ହେଲେ ମଧ୍ୟ ତପସ୍ୟା ତ..." କହିଲେ ବ୍ରହ୍ମା—"ଏ'ସଂସାର ତ୍ରିଗୁଣାତ୍ମକ । ସମସ୍ତେ ନିଜ ନିଜର ସ୍ୱଭାବ ଅନୁସାରେ ସାଧନାରେ ରତ ହୋଇଛନ୍ତି । ତମୋଗୁଣ ପ୍ରକୃତିର ଲୋକମାନେ ଅନ୍ୟ ପ୍ରକାର ସାଧନ କରି ନ ପାରନ୍ତି । ସେମାନଙ୍କ ପକ୍ଷରେ ତାମସ ସାଧନା ହିଁ ଉଚିତ ପନ୍ଥା । ଶ୍ରୀହରିଙ୍କ ସାନ୍ନିଧ୍ୟ ପାଇଁ ଯାହା କିଛି କରାଗଲେ ମଧ୍ୟ ଅନୁଚିତ ବୋଲି କୁହାଯାଇ ପାରିବନାହିଁ । ଯିଏ ଯେଉଁ ବାଟରେ ଯାଉ ନା କାହିଁକି, ସମସ୍ତଙ୍କର ଲକ୍ଷ୍ୟ ଏକ... ।"

ଆଉ କିଛି ଦୂର ଅଗ୍ରସର ହେବା ପରେ ମୁନିମାନେ ଲକ୍ଷ୍ୟ କଲେ; କେତେକ ଲୋକ ହାତରେ ମାଳା ଧାରଣ କରି ଜପ କରିବାରେ ମଗ୍ନ । ସେମାନଙ୍କୁ ଦେଖି ମୁନିମାନେ ପଚାରିଲେ, ଏମାନେ କେଉଁ ଧରଣର ତପସ୍ୱୀ ବ୍ରହ୍ମନ୍ ?"

ବ୍ରହ୍ମା ଉତ୍ତର ଦେଇ କହିଲେ—"ଭଗବାନଙ୍କର ଅନେକ ମୂର୍ତ୍ତି ରହିଛି । ତନ୍ମଧ୍ୟରେ 'ମନ୍ତ୍ର ମୂର୍ତ୍ତି' ଅନ୍ୟତମ । ସେହି ମନ୍ତ୍ରମୂର୍ତ୍ତିଙ୍କୁ ଏକାଗ୍ର ଚିତ୍ତରେ ଧ୍ୟାନ କଲେ ମଧ୍ୟ ସିଦ୍ଧି ପ୍ରାପ୍ତ ହୋଇଥାଏ । ମନ୍ତ୍ରସିଦ୍ଧି ମଧ୍ୟ ଶ୍ରେଷ୍ଠସିଦ୍ଧି ବୋଲି କୁହାଯାଇଛି । ଏମାନେ ସିଦ୍ଧ ହୋଇ ଥିଲେ ମଧ୍ୟ ନିଜ ନିଜର ସ୍ୱଭାବ ଅନୁସାରେ ମନ୍ତ୍ର ଜପ କରୁଛନ୍ତି; କାରଣ, ଏମାନେ ତାହାର ଫଳରେ ଆନନ୍ଦ ଅନୁଭବ କରନ୍ତି । ତେଣୁ ଅନ୍ୟ କୌଣସି କାର୍ଯ୍ୟରେ ଏମାନଙ୍କର ପ୍ରବୃତ୍ତି ନାହିଁ ।"

ଆଉ ଟିକିଏ ଦୂର ଅଗ୍ରସର ହେବା ପରେ, ସେମାନେ ଲକ୍ଷ୍ୟ କଲେ—ଯମ, ନିୟମ, ଆସନ, ପ୍ରାଣାୟାମ, ଧ୍ୟାନ ଓ ଧାରଣାର ସହିତ କେତେକ ବ୍ୟକ୍ତି ସମାଧିରେ ତଲ୍ଲୀନ ହୋଇଛନ୍ତି । ସେମାନଙ୍କୁ ଦେଖି ମୁନିମାନେ ପଚାରିଲେ—"ପ୍ରଭୋ, ଏମାନେ କେଉଁ ଶ୍ରେଣୀର ସାଧକ ?"

ପିତାମହ କହିଲେ—"ଏମାନେ ଅଷ୍ଟାଙ୍ଗ ଯୋଗଦ୍ୱାରା ସିଦ୍ଧିଲାଭ କରିଛନ୍ତି । ଏମାନେ ହେଉଛନ୍ତି 'ରାଜଯୋଗୀ' । ସଂଯମ ହେଉଛି ଏମାନଙ୍କର ପ୍ରଧାନ ଅସ୍ତ୍ର ଏବଂ ପ୍ରାଣାୟାମ ହେଉଛି—ଏମାନଙ୍କର ପ୍ରଧାନବଳ । ପ୍ରାଣକୁ ନିରୋଧ କରି ପାରିଲେ ମନ ଆପଣା ଛାଏଁ ନିରୋଧ ହୋଇ ପାରିବ । ତେଣୁ ଏମାନେ ପ୍ରାଣବାୟୁର ନିରୋଧ ଫଳରେ ସମାଧି ମଗ୍ନ ହୋଇଛନ୍ତି ।"

ତା'ପରେ କୌତୁହଳବଶତଃ ପଚାରିଲେ ମୁନିଗଣ—"ଏତେ ଧରଣର ସିଦ୍ଧମାନେ ଏଠାରେ କାହିଁକି ଏକତ୍ରିତ ହୋଇଛନ୍ତି ? ଏମାନେ ଅନ୍ୟସ୍ଥାନ କାହିଁକି ନିର୍ବାଚନ କଲେ ନାହିଁ ?"

ଏହା ଶୁଣି ହସି ହସି କହିଲେ ପିତାମହ—"ସେମାନେ ଆଉ ଯିବେ କେଉଁଠିକି ? ସମସ୍ତ ସିଦ୍ଧିର ମୂଳ ହେଉଛନ୍ତି—ସଦାଶିବ । ଶଙ୍କରଙ୍କ ଆରାଧନା ବ୍ୟତିରେକେ ସିଦ୍ଧି ଅସମ୍ଭବ । ଆମେମାନେ ପରମ ସିଦ୍ଧି ଲାଭ ପାଇଁ ସଦାଶିବଙ୍କୁ ସ୍ମରଣ କରୁଥାଉଁ । ସ୍ୱୟଂ ନାରାୟଣ ମଧ୍ୟ ସର୍ବଦା ଶିବନାମ ଜପ କରୁଛନ୍ତି । ତେଣୁ ଶ୍ରେଷ୍ଠ ସାଧକମାନେ କୈଳାସରେ ଏକତ୍ରିତ ହୋଇଛନ୍ତି ।"

ମୈତ୍ରେୟ ମୁନି କହିଲେ—"ହେ ବିଦୁର, ଏହିପରି ଭାବରେ ବହୁ ଦିବ୍ୟ ପୁରୁଷଙ୍କୁ ଦର୍ଶନ କରି କରି ମୁନିମାନେ ବ୍ରହ୍ମାଙ୍କ ସହିତ ଧୀରେ ଧୀରେ କୈଳାସ ଶିଖରରୁ ଶିବପୁରୀ ଆଡ଼କୁ ଅଗ୍ରସର ହେଲେ ।"

## ଛପ୍ପୟ

"ଚହୁଁ ଦିଶି ଦେଖେ ସିଦ୍ଧ ବିବିଧ ସାଧନ ସବ ସାଧିତ ।
ଜପ ତପ ଯୋଗ ବିରାଗ ଆଦିତେଂ ହର ଆରାଧିତ ।
ଔଷଧିତେଂ ଇକ ସିଦ୍ଧ ଅପର ମନ୍ତ୍ରନ କୁଁ ଜପିକେ ।
କୋଇ ଠାଢ଼େ ରହେଂ ବହୁତ ନାନାବିଧି ତପିକେ ।।
ସିଦ୍ଧେଶ୍ୱର ଶିବ କୁଁ ସଦା ସେୱେଂ ସତତ ସୁସିଦ୍ଧଗନ ।
ପିତର ଦେବତା ଋଷିନ କୋ ନିରଖି ଭୟୋ ଅତି ମୁଦିତ ମନ ।।"



## କୈଳାସର ଅନୁପମ ଶୋଭା

"ମୟୂର କେକାଭିରୁତଂ ମଦାନ୍ଧାଳି ବିମୂର୍ଚ୍ଛିତମ୍ ।
ପ୍ଲାବିତୈ ରକ୍ତ କଣ୍ଠାନାଂ କୂଜିତୈଶ୍ଚ ପତତ୍ରିଣାମ୍ ॥
ଆହ୍ୱୟନ୍ତ ମିବୋଦ୍ଧ ସ୍ତୈ ର୍ଦ୍ୱିଜାନ୍ କାମଦୁଘୈ ର୍ଦ୍ରୁମୈଃ ।
ବ୍ରଜନ୍ତ ମିବ ମାତଙ୍ଗୈ ର୍ଗୃଣନ୍ତ ମିବ ନିର୍ଝରୈଃ ॥" *

(ଭାଗବତ ୪।୬।୧୨।୧୩)

### ଛପ୍‌ପୟ

"ଝରନା ଝର୍ ଝର୍ ଝରହିଁ ମନୋ ଗିରି ହସିକେ ବୋଲତ ।
କାରେ ଘୂମେଂ ନାଗ ମନ ହୁଁ ନଗ ଇତ ଉତ ଡୋଲତ ॥
କଲ୍ପ ବୃକ୍ଷ କୀ ଉଠୀ ଶାଖ ହିଲି ମନ ହୁଁ ବୁଲା ବହିଁ ।
ଥକିତ ପଥିକ ଲଖି ଅତଥି ଭାବତେଂ ଦୟା ଦଖାବହିଁ ॥
ଆମ ଅନାର ଅଶୋକ ବର ବଟ କଦମ୍ବ ପାଟଲ ବକୁଲ ।
ପୀପର ପାକର ବିଟପ ଶୁଭ ଶୋଭେଂ ବହୁ ଶତଦଲ କମଲ ॥"

---

*ଅର୍ଥାତ୍—କୈଳାସ ପର୍ବତ ଉପରେ ମୟୂରମାନେ କେକାରବ କରୁଛନ୍ତି । ଭ୍ରମରମାନେ ମଧୁପାନରେ ମତ୍ତ ହୋଇ ଗୁଞ୍ଜନ କରୁଛନ୍ତି । କୋକିଳଗଣ କୁହୁ କୁହୁ ତାନରେ ଦିଗଦିଗ ମୁଖରିତ କରୁଛନ୍ତି ଏବଂ ପକ୍ଷୀମାନେ କଳକୂଜନରେ ମନମୁଗ୍ଧ କରୁଛନ୍ତି । କଳ୍ପବୃକ୍ଷର ଶାଖାଗୁଡ଼ିକ ଏପରି ଭାବରେ ଦୋହଲୁଛନ୍ତି ଯେ, ମନେ ହେଉଛି—ସତେ ଯେପରି ସେମାନେ ହାତ ହଲାଇ ବ୍ରାହ୍ମଣ ତଥା ପକ୍ଷୀମାନଙ୍କୁ ଆହ୍ୱାନ କରୁଛନ୍ତି ।

ହାତୀମାନେ ବହୁ ସଂଖ୍ୟାରେ ଏଣେ ତେଣେ ପରିଭ୍ରମଣ କରୁଥିବାରୁ ମନେ ହେଉଛି—ସତେ ଅବା, ପର୍ବତ ଗତିଶୀଳ ହୋଇ ଯାଇଛି ଏବଂ ଝରଣାର ଝର ଝର ନାଦରୁ ମନେ ହେଉଛି, ସତେ ଯେପରି, ସ୍ୱୟଂ କୈଳାସ ଗୁଣୁ ଗୁଣୁ ସ୍ୱରରେ ଆଳାପ କରୁଛି ।

ପ୍ରତ୍ୟେକ ସ୍ଥାନରେ ନିଜର ଅପରୂପ ଶୋଭା ରହିଛି । ସେହି ସ୍ଥାନରେ ସେ ପ୍ରକାର ସୌନ୍ଦର୍ଯ୍ୟରେ ବୈଶିଷ୍ଟ୍ୟ ରହିଛି । ସାହିତ୍ୟରେ ଅମ କବିମାନେ ବନର ପ୍ରାକୃତିକ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଅନେକ ବର୍ଣ୍ଣନା କରିଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ, କାନନର ପ୍ରାକୃତିକ ସୌନ୍ଦର୍ଯ୍ୟ ନଗରରେ କେଉଁଠୁ ମିଳିବ ? ସେଠାକାର ଶୋଭାରେ କୃତ୍ରିମତା ପୂର୍ଣ୍ଣ ରହିଛି । ସ୍ୱୟଂ ପ୍ରକୃତି ଦେବୀ ସେଠାରେ ଲଜ୍ଜାରେ ଅବଗୁଣ୍ଠନବତୀ ହୋଇ ଯାଇଛନ୍ତି । ନଗରରେ କେବଳ ବାହ୍ୟାଡ଼ମ୍ବର ପୂର୍ଣ୍ଣ ରହିଛି ମାତ୍ର; କିନ୍ତୁ କାନନର ସେହି ପ୍ରାକୃତିକଛଟା ନଗରରେ ସମ୍ଭବ ହେବ କିପରି ?

ନିର୍ଜନ ଅରଣ୍ୟରେ ପ୍ରକୃତି ରାଣୀ ନିଜ ମୁଖମଣ୍ଡଳରୁ ଅବଗୁଣ୍ଠନ ଉଠାଇ ଦେଇ ଆନନ୍ଦରେ ନୃତ୍ୟ କରୁଛନ୍ତି । ସେଠାରେ ତାଙ୍କର ବାଳିକାସୁଲଭ ଚଞ୍ଚଳ ସ୍ୱଭାବ ଝଲସି ଉଠିଛି । ପିତ୍ରାଳୟରେ ପୁତ୍ରୀର ଚଳଚଞ୍ଚଳ ଭାବ ଫୁଟି ଉଠିବା ପରି ପ୍ରକୃତି ରାଣୀ ବନ ଭୂମିରେ ଆନନ୍ଦ ମଗ୍ନ ହୋଇ ଉଠନ୍ତି ।

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ବ୍ରହ୍ମା ଦେବଗଣଙ୍କୁ ସଙ୍ଗରେ ନେଇ ଆଗେଇ ଚାଲିଲେ । ନାନା ଧାତୁରେ ମଣ୍ଡିତ କୈଳାସର ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନ କରି, ମୁନିଋଷି ଓ ଦେବଗଣ ତାଙ୍କର ମାର୍ଗ ଅନୁସରଣ କରୁଥିଲେ । ଅନେକ ପ୍ରକାର ମୃଗ ସେହି ଅଞ୍ଚଳରେ ବିଚରଣ କରୁଥିଲେ । ମଧୁପାନରେ ମତ୍ତ ଭ୍ରମରଗଣ ଗୁଞ୍ଜନ କରି ବନଭୂମିକୁ ମୁଖରିତ କରୁଥିଲେ । କୋକିଳମାନେ କୁହୁତାନରେ ମନୋମୁଗ୍ଧ କରୁଥିଲେ । ବୃକ୍ଷମାନେ ପବନର ହିଲ୍ଲୋଳରେ ଦୋହଲୁଥିଲେ । ପକ୍ଷୀମାନେ ଏଣେତେଣେ ଉଡ଼ି ବିଚିତ୍ର ଦୃଶ୍ୟ ସୃଷ୍ଟି କରୁଥିଲେ । ଝରଣାର କୁଳୁକୁଳୁ ନାଦ, ପକ୍ଷୀମାନଙ୍କ କଳକୂଜନରେ କୈଳାସର ଅରଣ୍ୟାନୀ ମୁଖରିତ ହେଉଥିଲେ । ପର୍ବତର ବନାନୀରେ ନାନାବିଧ ଫଳପୁଷ୍ପ ମଣ୍ଡିତ ବୃକ୍ଷମାନ ଶୋଭା ପାଉଥିଲା । ପୁଷ୍ପର ସୁଗନ୍ଧରେ ଦିଗବିଦିଗ ଆମୋଦିତ ହେଉଥିଲା । ମୁନି ଓ ଦେବଗଣ ସେହି ସୁଗନ୍ଧରେ ଆହ୍ଲାଦିତ ହୋଇ ଶୀଘ୍ର ଗତିରେ ଆଗେଇ ଚାଲିଲେ ।

ସେମାନେ କିଛିଦୂର ଅଗ୍ରସର ହେବା ପରେ, ଗୋଟିଏ ସ୍ୱଚ୍ଛ ସରୋବର ଅବଲୋକନ କଲେ । ସେହି ପୁଷ୍କରିଣୀରେ ଲାଲ, ସବୁଜ ତଥା ଶ୍ୱେତବର୍ଣ୍ଣର ପଦ୍ମଫୁଲ ଶୋଭା ପାଉଥିଲା । ତନ୍ମଧ୍ୟରେ କେତେକ ଶତଦଳ ପଦ୍ମ ଏବଂ କେତେକ ସହସ୍ରଦଳ ପଦ୍ମ ଥିଲା । ବନଭୂମିର ପ୍ରକାଣ୍ଡ ବୃକ୍ଷଗୁଡ଼ିକ ଉପରେ ମାଳତୀ, ମାଧବୀ ଆଦି ଲତା ମଣ୍ଡିତ ହୋଇଥିଲା । ଅନେକ ଫଳପୁଷ୍ପ ବୃକ୍ଷ ବ୍ୟତୀତ ସେଠାରେ ଘନ ବାଉଁଶ ବନ ମଧ୍ୟ ରହିଛି । ବିଭିନ୍ନ ପ୍ରକାର ବାଉଁଶ

ସେଠାରେ ଥିବାର ଦେଖି ଦେବ ଓ ଋଷିଗଣ ଆଶ୍ଚର୍ଯାନ୍ୱିତ ହୋଇ ଯାଇଥିଲେ । ପବନ ବହିଲେ ସେହି ବାଉଁଶ ବଣରୁ ସୁନ୍ଦର ମନୋମୁଗ୍ଧକର ସ୍ୱର ଭାସି ଆସୁଥିଲା ।

ସେହି ବନ ମଧ୍ୟରେ ଆହୁରି ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ପୁଷ୍କରିଣୀ ରହିଛି । ସେଥିରେ ମଧ୍ୟ କମଳ ଓ କୁମୁଦ ଫୁଟି ସ୍ଥାନଟିର ମହତ୍ତ୍ୱ ବୃଦ୍ଧି କରୁଛି । ଭ୍ରମରମାନେ ଦଳଦଳ ହୋଇ ପଦ୍ମ କୋଷରୁ ମଧୁ ଆହରଣ ଲାଗି ସେଠାରେ ଉଡ଼ୁଛନ୍ତି । ପବନର ହିଲ୍ଲୋଳରେ ପଦ୍ମଗୁଡ଼ିକ ଦୋହଲିଯିବା ଫଳରେ ଭ୍ରମରମାନେ ହଇରାଣ ହେଉଛନ୍ତି । ପଦ୍ମର ଦୋହୁଲାମାନ ଅବସ୍ଥାରୁ ମନେ ହେଉଛି, ସତେ ଯେପରି, ପଦ୍ମିନୀ-ନାୟିକା ଅଭିମାନିନୀ ହୋଇ ତା'ର ଦକ୍ଷିଣ ନାୟକଙ୍କୁ ତା'ଠାରୁ ମଧୁ ଆହରଣ ଲାଗି ବାରଣ କରୁଛି ! ସେହି ସରୋବରଗୁଡ଼ିକରେ ଅନେକ ଜଳଚର ସନ୍ତରଣ କରୁଛନ୍ତି । ସେମାନଙ୍କ କୋଳାହଳରେ ବନଭୂମି ମୁଖରିତ ହୋଇ ଉଠୁଛି ।

ସେହି ସରୋବର ଗୁଡ଼ିକରେ ଅନେକ ରଙ୍ଗର ମତ୍ସ୍ୟ ଶୋଭା ପାଉଥିଲେ । ସେଠାରେ ଶରଭ ଜାତୀୟ ଗୋଟିଏ ପ୍ରକାର ଜୀବ ଶୋଭା ପାଉଥିଲେ । ସେହି ଜୀବଗୁଡ଼ିକର ବିଶେଷତ୍ୱ ହେଉଛି—ସେମାନେ ଛଅମାସ ପୃଥିବୀରେ ବିଚରଣ କରିବା ପରେ; ଛଅମାସ ଗାତ ଖୋଳି ବିବରରେ ପଶି ରହନ୍ତି । ପୃଥିବୀରେ ବିଚରଣ କରୁଥିବା ସମୟରେ ସେମାନେ ଅଜ୍ଞାତବାସ ଲାଗି ଖାଦ୍ୟ ସଂଗ୍ରହ କରି ରଖନ୍ତି । ବରଫର ଆସ୍ତରଣ ତଳେ ସେମାନଙ୍କର ସୁରକ୍ଷିତ ଦୁର୍ଗରେ ସେମାନେ ଛଅମାସ କଟାଇ ଦେଇ, ଗ୍ରୀଷ୍ମ ଋତୁରେ ବାହାରକୁ ବାହାରି ଆସନ୍ତି । ସେମାନଙ୍କ ଚର୍ମ ଅତ୍ୟନ୍ତ କୋମଳ । ସେଠାକାର ଅଧିବାସୀମାନେ ସେହି ଜୀବମାନଙ୍କର କୋମଳ ଚର୍ମ ସଂଗ୍ରହ ଉଦ୍ଦେଶ୍ୟରେ ସେମାନଙ୍କୁ ଶିକାର କରନ୍ତି । ସେହି ଜୀବର ଲୋମ-ବହୁଳ ଚର୍ମ ସେଠାକାର ନାରୀମାନଙ୍କ ଭୂଷଣରୂପେ ଅଦ୍ଭୁତ ହୁଏ । ଦେବତାମାନେ ସେହି ଜୀବମାନଙ୍କୁ ଦେଖି ଆଶ୍ଚର୍ଯ ହୋଇଗଲେ ।

ଆଉ ଟିକିଏ ଅଗ୍ରସର ହେବାପରେ ସେମାନେ ନନ୍ଦା ଓ ଅଳକନନ୍ଦା ନାମକ ଦୁଇଟି ଗିରିନଦୀ ଦେଖିବାକୁ ପାଇଲେ । ସେହି ଗିରିନଦୀ ଦୁଇଟିର କଳନାଦରୁ ଭାସି ଆସୁଥିଲା—ହର·· ·ହର···ହର ଶବ୍ଦ । ବୃକ୍ଷଗୁଡ଼ିକର ସନ୍ଧି ମଧ୍ୟରେ ଲୁଚକାଳି ଖେଳିଲା ପରି ନଦୀ ଦୁଇଟି ତୀବ୍ର ବେଗରେ ଛୁଟି ଆସୁଥିଲେ ନିମ୍ନଦେଶକୁ । ସେହି ଗିରିନଦୀର ବିଭିନ୍ନ ସ୍ଥାନରେ ଭଗବତୀ ଗୌରୀଙ୍କ ସ୍ନାନ ଲାଗି ସୁନ୍ଦର ସୋପାନ ଶ୍ରେଣୀ ନିର୍ମିତ ହୋଇଥିଲା । ସେହି ନଦୀ ଦୁଇଟିର ସ୍ୱଚ୍ଛ ଜଳରେ ଦେବାଙ୍ଗନାମାନେ ଆନନ୍ଦରେ ମତ୍ତ ହୋଇ ଜଳକ୍ରୀଡ଼ା କରୁଥିଲେ । କେତେକ ଅପ୍ସରା ସେହି ନଦୀ ଦୁଇଟିର କୂଳରେ ଗୀତ, ବାଦ୍ୟ ଓ ନୃତ୍ୟର ଆୟୋଜନ କରିଥିଲେ । ନଦୀ ଦୁଇଟିର ପ୍ରାକୃତିକ ଶୋଭାସମ୍ପଦ ସହିତ ଦେବକନ୍ୟା-ମାନଙ୍କର ଶାରୀରିକ ସୌନ୍ଦର୍ଯ୍ୟ ସେହି ଅଞ୍ଚଳଟିକୁ ଅନନ୍ୟ ସୌନ୍ଦର୍ଯରେ ପରିପୂର୍ଣ୍ଣ କରିଥିଲା ।

ଦେବାଙ୍ଗନାମାନଙ୍କର କୁଙ୍କୁମବୋଳା ଅଙ୍ଗରୁ ଅଙ୍ଗରାଗ ଧୋଇ ହୋଇ ନଦୀଜଳ କୁଙ୍କୁମାକ୍ତ ହୋଇ ଉଠିଥିଲା । ହସ୍ତୀମାନେ ସେହି ଜଳକୁ ପାନ କରି ମତ୍ତ ହୋଇ ଏଣେ ତେଣେ ପରିଭ୍ରମଣ କରୁଥିଲେ । ଦେବାଙ୍ଗନାମାନଙ୍କର ମନୋରମ କ୍ରୀଡ଼ା ଲକ୍ଷ୍ୟକରି ଦେବ ଓ ଋଷିଗଣ ବିସ୍ମିତ ନୟନରେ ସେମାନଙ୍କ ଆଡ଼କୁ ଅନାଇ ରହିଲେ । ସେମାନେ ଦକ୍ଷଯଜ୍ଞରେ ଶିବଗଣଙ୍କଠାରୁ ପାଇଥିବା ପରାଭବଜନିତ ଦୁଃଖ ତଥା, କ୍ଷତବିକ୍ଷତ ଶରୀରର ପୀଡ଼ାକୁ କ୍ଷଣକାଳ ଲାଗି ପାସୋରି ଦେଇଥିଲେ । ସେମାନେ ମନେ ମନେ ଭାବିଲେ—"ସ୍ୱର୍ଗରେ ଏତେ ସୁଖ କେଉଁଠି ଅବା ସମ୍ଭବ ?"

ମୁନି ଓ ଦେବଗଣ ବ୍ରହ୍ମାଙ୍କ ପଛେ ପଛେ ଆହୁରି କିଛିଦୂର ଅନୁସରଣ କରିବା ପରେ ସେମାନଙ୍କ ଦୃଷ୍ଟିରେ ପଡ଼ିଲା ଅଳକାପୁରୀର ଦୃଶ୍ୟ । ନାନା ପ୍ରକାର ମଣିମୁକ୍ତା ଖଚିତ ବିମାନରେ ବସି ସିଦ୍ଧ, ଯକ୍ଷ, ଗନ୍ଧର୍ବ ଓ ଉପଦେବଗଣ ସେମାନଙ୍କ ପତ୍ନୀମାନଙ୍କ ସହିତ ଏଣେ ତେଣେ ଗମନାଗମନ କରୁଥିଲେ । ସେମାନଙ୍କ ଶୋଭାସମ୍ପଦକୁ ଦେଖି ମନେହେଲା; ସତେ ଅବା, ବିଦ୍ୟୁତ୍ ସୂର୍ଯ୍ୟର ସାନ୍ନିଧ ଲାଭ କରିବା ସଙ୍ଗେ ସଙ୍ଗେ ଚନ୍ଦ୍ରଙ୍କୁ ଆଲିଙ୍ଗନ କରିବାର ସୌଭାଗ୍ୟ ଲାଭ କରିଛନ୍ତି ଏବଂ ଉପରେ ସେ ବର୍ଷାକ୍ତ ମେଘର କୋଳରେ ନିଜର ସୌନ୍ଦର୍ଯ୍ୟ ପସରା ମେଲି ଦେଇ ଜନମାନସକୁ ବିମୁଗ୍ଧ କରୁଛନ୍ତି ।

ସେହି ମନୋରମ ଅଳକାପୁରୀ ବୈଚିତ୍ର୍ୟପୂର୍ଣ୍ଣ ସୌନ୍ଦର୍ଯ୍ୟକୁ ବିସ୍ମୟ ବିମୁଗ୍ଧ ଅନ୍ତଃକରଣରେ ସାଇତି ଦେବ ଓ ଋଷିଗଣ ଆଉ କିଛିଦୂର ଅଗ୍ରସର ହୋଇ 'ସୌଗନ୍ଧିକ' ବନରେ ଉପଗତ ହେଲେ । ସେଠାକାର ସୁଷମା ଅବଲୋକନ କରି ସେମାନେ ଅବାକ୍ ହୋଇଗଲେ । ସେହି ବନର ପ୍ରାକୃତିକ ଛଟା ତଥା ରମଣୀୟ ଦୃଶ୍ୟାବଳୀ ଦେଖି ସେମାନେ ମନେ ମନେ ଭାବିଲେ—'ପ୍ରକୃତରେ କୈଳାସପତି ଶିବଙ୍କର ସାମ୍ରାଜ୍ୟ ସତରେ କେଡ଼େ ମନୋରମ' ! ଦେବଗଣ ସେ ପର୍ଯ୍ୟନ୍ତ କୈଳାସର ସୌନ୍ଦର୍ଯ୍ୟ ଦେଖି ନଥିଲେ । ପ୍ରତ୍ୟେକ ସ୍ଥଳର ନବ ନବ ଦୃଶ୍ୟାବଳୀ ଅବଲୋକନ କରି, ସେମାନେ ଆତ୍ମଗ୍ଲାନିରେ ସନ୍ତପ୍ତ ହୋଇ ଭାବିଲେ—ଏଭଳି ସୌନ୍ଦର୍ଯ୍ୟମୟୀ ଭୂମିର ଅଧିପତି ଶିବଙ୍କୁ ଆମେମାନେ ଅପମାନିତ କରି କି ଅପରାଧ କରି ନଥାଉଁ । ଆମେମାନେ କେଉଁ ମୁହଁରେ ଯାଇ ସଦାଶିବଙ୍କ ଆଗରେ ଛିଡ଼ା ହେବା !! ଆମରମାନଙ୍କ କୁକୃତ୍ୟ ଫଳରେ ତାଙ୍କର ପ୍ରିୟତମା ପତ୍ନୀ ସତୀ ଯଜ୍ଞକୁଣ୍ଡ ନିକଟରେ ଆତ୍ମହତ୍ୟା କଲେ । ସେ ଆମକୁ ଦେଖିଲେ କ'ଣ କହିବେ ?"

ଋଷି ଓ ଦେବଗଣ ଏହି ଚିନ୍ତାରେ ମଗ୍ନ ହୋଇଥିବା ସମୟରେ ବ୍ରହ୍ମା ସମ୍ମୁଖରେ ଗୋଟିଏ ବିଶାଳ ବଟବୃକ୍ଷ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ—"ଏହି ବୃକ୍ଷ ମୂଳରେ ସଦାଶିବ ସଦାସର୍ବଦା ବସି ରହିବାକୁ ଖୁବ୍ ଭଲପାଆନ୍ତି ।"

ମୈତ୍ରେୟ ମୁନି କହନ୍ତି—"ହେ ବିଦୁର, ଏହା ଶୁଣି ଦେବ, ଋଷି ଓ ପିତରଗଣ ଦୂରରୁ ସେହି ବୃକ୍ଷକୁ ପ୍ରଣାମ ଜଣାଇଲେ । କାରଣ, କୈଳାସର ଅବଲୋକନ ତଥା ଶିବଙ୍କର ଗୁଣକୀର୍ତ୍ତନ ଫଳରେ ସେମାନଙ୍କ ଅନ୍ତରାତ୍ମା ଅତ୍ୟନ୍ତ ନିର୍ମଳ ତଥା ବିଶୁଦ୍ଧ ହୋଇ ଯାଇଥିଲା । ସେମାନେ ସଦାଶିବଙ୍କ ଦର୍ଶନ ଲାଗି ବ୍ୟାକୁଳ ହୋଇ ଉଠିଲେ । ମନରେ ଅଭିଳାଷ ଜାଗ୍ରତ ହେଲେ ସଦାଶିବ ସଙ୍ଗେ ସଙ୍ଗେ ସଙ୍ଗେ ଦର୍ଶନ ଦିଅନ୍ତି !"

## ଛପ୍ପୟ

"କମଲ କୁସୁମ ଅତି ସରସ ବିମଲ ସରବର ମହଁ ସୋହେଂ ।
ମଞ୍ଜୁ ଝୁଣ୍ଡେଂ ମଦମତ୍ତ ମଧୁପଗନ ମୁନିଗନ ମନ ମୋହେଂ ॥
ରତି ବିଳସତେଂ ଅକତ ଚକତ ସୁର ରମନୀ ନ୍ହାୱେଂ ।
ତନୁ କୁଙ୍କୁମ କୁଁ ଧୋଇ ସଲିଲ କୁଂ ପୀତ ବନାୱେଂ ॥
କହୁଁ କିନ୍ନର କଂ ପୁରୁଷ ଗନ ପ୍ରାନ ପ୍ରିୟା ନିଜ ସଁଗ ଲୟେଂ ।
ତନୁ ପୁଲକିତ ଉଲ୍ଲସିତ ହିୟ ଡୋଲେଁ ଗଲବାହୀ ଦୟେଂ ॥"



# ବ୍ରହ୍ମାଦି ଦେବଗଣଙ୍କ ଶିବଦର୍ଶନ

"ତଂ ବ୍ରହ୍ମନିର୍ବାଣ ସମାଧି ମାଶ୍ରିତଂ
ବ୍ୟୁପାଶ୍ରିତଂ ଗିରିଶଂ ଯୋଗ କକ୍ଷାମ୍ ।
ସ ଲୋକପାଳ ମୁନିଭ୍ୟୋ ମନୂନାଂ
ଆଦ୍ୟଂ ମନୁଂ ପ୍ରାଞ୍ଜଳୟଃ ପ୍ରଣେମୁଃ ॥"

(ଭାଗବତ ୪।୬।୩୯)

ଛପ୍‌ପୟ

"ସମ୍ମୁଖ ନିରେଖିଯା ବିଶଦ ବିଟପବର ବିଟିକୋ ସୁଖକର ।
ସୌ ଯୋଜନ ଅତି ସଘନ ସ୍ୱଚ୍ଛ ସୁନ୍ଦର ଅତି ମନହର ॥
ତା ତରୁ ତର ତପୟୁକ୍ତ ତାପସନି ମଧ୍ୟ ମହେଶ୍ୱର ।
ଭୂତନାଥ ଭଗବାନ ବିରାଜେଂ ଶିବ ପରମେଶ୍ୱର ॥
ଅକ୍ଷମାଲ ଗଲ ଚନ୍ଦ୍ରସିର, ଜଟା ମୁକୁଟ ଶ୍ରୀଅଙ୍ଗ ଯୁତ ।
କରହିଂ ଜ୍ଞାନଉପଦେଶ ହର, ଜୋ ପୂଛ ହିଁ କରୁ ବ୍ରହ୍ମସୁତ ॥"

---

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଯେଉଁ ଭୂତନାଥ ଭଗବାନ୍ ମହେଶ୍ୱର ନିଜର ବାମହସ୍ତସ୍ଥିତ ଯୋଗପଟ୍ଟକୁ ଆଶ୍ରୟ କରି ବ୍ରହ୍ମନିର୍ବାଣ ସମାଧିରେ ମଗ୍ନ ଥିଲେ; ସେହି ଆଦ୍ୟ ମନୁ ଶିବଙ୍କୁ ଲୋକପାଳ ତଥା ଋଷିଗଣଙ୍କ ସହିତ ବ୍ରହ୍ମା ଯାଇ ପ୍ରଣାମ ନିବେଦନ କଲେ ।"

ଏହି ସଂସାରରେ ସର୍ବତ୍ର ସୁଖ ତଥା ଅଭୟ ରହିଛି; କିନ୍ତୁ ଆମେମାନେ ଦୁଃଖ ଓ ଭୟର ସୃଷ୍ଟି ଆପଣା ମନରୁ କରୁଥାଉଁ । ଅନ୍ୟକୁ ଦୁଃଖ ଦେଲେ ଆମକୁ ଦୁଃଖ ଭୋଗିବାକୁ ପଡ଼ିବ । ଅନ୍ୟକୁ ଭୟ ଦେଖାଇଲେ, ଆମକୁ ଭୟର ସମ୍ମୁଖୀନ ହେବାକୁ ପଡ଼ିବ । କାରଣ ଆତ୍ମା ସର୍ବତ୍ର ବ୍ୟାପି ରହିଛି । ଏଣୁ ଯେଉଁ ବ୍ୟବହାର ତୁମକୁ ଭଲଲାଗେ ନାହିଁ, ସେ ପ୍ରକାର ମନ୍ଦ ଆଚରଣ କେବେହେଲେ କରନାହିଁ । ଆମେମାନେ ନିଜର ପାପଦ୍ୱାରା ଅନ୍ୟର ପାପକୁ ଦେଖୁଥାଉଁ । ମହାପୁରୁଷମାନଙ୍କ ପ୍ରତି ଅନ୍ୟାୟ ଆଚରଣ କରି, ସେ ଆମପରି ସେହି ପ୍ରକାର ଆଚରଣ ପ୍ରଦର୍ଶନ କରିବେ ବୋଲି ଭାବୁଥାଉଁ । ତେଣୁ ସେମାନଙ୍କ ସମ୍ମୁଖକୁ ଯିବାକୁ ଆମ ମନରେ ଭୟ ଜାତ ହୁଏ । ଯେଉଁ ବ୍ୟକ୍ତି ମହାତ୍ମା, ଯେ ସମସ୍ତ ଗୁଣରେ ବିଭୂଷିତ, ସେ କାହାର ପ୍ରତି ଦ୍ୱେଷ ରଖନ୍ତି ନାହିଁ କିମ୍ବା କାହାରି ପ୍ରତି କ୍ରୋଧ ପ୍ରକାଶ କରନ୍ତି ନାହିଁ । ଯଦି ଦୈବାତ୍ କୌଣସି ପରିସ୍ଥିତିର ବଶବର୍ତ୍ତୀ ହୋଇ ସେ କାହାର ପ୍ରତି କ୍ରୋଧିତ ହୋଇ ଉଠନ୍ତି, ତେବେ ତାହା ପାଣିର ଗାର ପରି କ୍ଷଣସ୍ଥାୟୀ ହୋଇଥାଏ । ଏହି ମହାନ୍ ଗୁଣ ଯୋଗୁ ସେମାନେ ମହାପୁରୁଷ ପଦବାଚ୍ୟ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର ! ବ୍ରହ୍ମାଙ୍କ ସହିତ ଦେବଗଣ ଓ ଋଷିମାନେ କୈଳାସ ଶିଖରର ଅପରୂପ ଶୋଭା ଦେଖି ଦେଖି ସେମାନେ ଯାଇ ଗୋଟିଏ ବଟବୃକ୍ଷ ନିକଟରେ ଉପସ୍ଥିତ ହେଲେ । ସେହି ବଟବୃକ୍ଷଟି ଶତଯୋଜନ ଉଚ୍ଚ ଏବଂ ତା'ର ଶାଖା-ଗୁଡ଼ିକ ବହୁଯୋଜନ ବିସ୍ତୃତ ହୋଇଥିଲା । ସେ ଏତେ ସଘନ ଥିଲା ଯେ, ବର୍ଷା ସମୟରେ ଗୋଟିଏ ଜଳବିନ୍ଦୁ ମଧ୍ୟ ତା' ତଳେ ପଡ଼ୁ ନଥିଲା । ସେଥିରେ ଆଦୌ ପକ୍ଷୀମାନଙ୍କ ନୀଡ଼ ନଥିଲା । ତା'ର ଛାୟାରେ ବସି ଅସଂଖ୍ୟ ସିଦ୍ଧ ଧ୍ୟାନମଗ୍ନ ହୋଇଥିଲେ । ସେହି ବଟବୃକ୍ଷ ତଳେ ଦେବାଧିଦେବ ଯୋଗାସନରେ ବସିଥିବାର ଦେବତାମାନେ ଦେଖି ପାରିଲେ । ସତୀଙ୍କ ଦେହତ୍ୟାଗ ଫଳରେ ତାଙ୍କ ମନରେ ଯେଉଁ କ୍ରୋଧ ଜାତ ହୋଇଥିଲା, ତାହା ସେ ମନରୁ ଦୂର କରି ଦେଇଥିଲେ । ସେ ସ୍ୱେଚ୍ଛାଶୂନ୍ୟ ଅନ୍ତରରେ ସେଠାରେ ବିରାଜମାନ କରିଥିଲେ । ତାଙ୍କରି ନିକଟରେ ଉତ୍ତର ଦିଗର ଲୋକପାଳ କୁବେର ହାତଯୋଡ଼ି ଉପବେଶନ କରିଥିଲେ । ସନକ, ସନନ୍ଦନ, ସନତ୍କୁମାର, ସନାତନ ଓ ନାରଦ ଆଦି ଊର୍ଦ୍ଧ୍ୱରେତା ମହର୍ଷିଗଣ ଜିଜ୍ଞାସୁ ଭାବରେ ସେଠାରେ ମସ୍ତକ ଅବନତ କରି ତାଙ୍କ ଶ୍ରୀଚରଣ ତଳେ ବସିଥିଲେ । ଶିବ ହେଉଛନ୍ତି—ବିଧି ନିଷେଧର ନିୟନ୍ତା । ତେଣୁ ଲୋକକଲ୍ୟାଣ ଉଦ୍ଦେଶ୍ୟରେ ଜଗତ୍‌ବାସୀଙ୍କ ସମକ୍ଷରେ ଆଦର୍ଶ ଉପସ୍ଥାପିତ କରନ୍ତି । ନିଜେ ଜପ, ତପ, ସମାଧି ଆଚରଣ କରି ଲୋକଶିକ୍ଷା ଦିଅନ୍ତି ।

ଶିବ କୁଶ, ମୃଗଚର୍ମ ଓ ବସ୍ତ୍ରରେ ନିର୍ମିତ ଏକ ଆସନ ଉପରେ ବସିଥିଲେ । ସେ ଶରୀରରେ ବିଭୂତି ବୋଳି ହୋଇଥିଲେ । ରୁଦ୍ରାକ୍ଷମାଳାରେ ତାଙ୍କର ଗ୍ରୀବା ସୁଶୋଭିତ ହୋଇଥିଲା । ତପସ୍ୱୀମାନଙ୍କ ଚିହ୍ନ ଦଣ୍ଡ ସେ ଧାରଣ କରିଥିଲେ । ସେ ତାଙ୍କର ବିସ୍ତୀର୍ଣ୍ଣ

ଜଟାକୁ ଗୁଡ଼ାଇ ମୁଞ୍ଜ ଘାସ ବାନ୍ଧିଥିବା ସେହି ଜଟାଜୂଟରେ ଦ୍ୱିତୀୟା ଚନ୍ଦ୍ର ସୁଶୋଭିତ ହୋଇଥିଲା । ସେ ପଦ୍ମାସନରେ ଆସୀନ ଥିଲେ । ତାଙ୍କ ଜଗତ୍ ନିଗୁଢ଼ିକ ତର୍କମୁଦ୍ରାରେ ରହିଥିଲା । ସମ୍ମୁଖରେ ନାରଦ ବସି ଯୋଗ ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରୁଥିଲେ । ଶିବ ଅତ୍ୟନ୍ତ ଗମ୍ଭୀର ମୁଖମୁଦ୍ରାରେ ତାଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ । ଅନ୍ୟ ମହର୍ଷିମାନେ ଶିବଙ୍କ ବଚନାମୃତ ପାନ କରି ବ୍ରହ୍ମାନନ୍ଦ ସୁଖ ଅନୁଭବ କରୁଥିଲେ । ଶିବ ବାମ ଭୁଜଟିକୁ ଆଣୁକାଣ୍ଡ ଉପରେ ରଖିଥିଲେ । ସେଠାକାର ବାତାବରଣ ଅତ୍ୟନ୍ତ ପ୍ରଶାନ୍ତ ଥିଲା । ଏହି ସମୟରେ ଦ୍ୱାରପାଳ ସେଠାରେ ପହଞ୍ଚି ହାତଯୋଡ଼ି କହିଲା—"ପ୍ରଭୋ ! ଲୋକପାଳ ପିତାମହ ଦେବଗଣ ଓ ମୁନିଋଷିଙ୍କ ସହିତ ଉପସ୍ଥିତ ହୋଇଛନ୍ତି ।"

ଏହା ଶୁଣିବା ମାତ୍ରେ ସେ ଆସନରୁ ଉଠି ବ୍ରହ୍ମାଙ୍କୁ ସଙ୍ଗୋଳି ଆଣିବା ପାଇଁ ଆଗେଇ ଗଲେ । ସେ ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ପ୍ରଣାମ କଲେ ଏବଂ ସେଠାରେ ଉପସ୍ଥିତ ମହର୍ଷିଗଣ ମଧ୍ୟ ପିତାମହଙ୍କୁ ପ୍ରଣାମ ନିବେଦନ କଲେ । ବ୍ରହ୍ମା ଦୁଇ ହାତରେ ଶିବଙ୍କୁ ଆଲିଙ୍ଗନ କରି କହିଲେ—"ଆପଣ ଏ' କଣ କଲେ ? ଏ' ବିପରୀତ ରୀତି ପ୍ରଦର୍ଶନ କଲେ କାହିଁକି ?"

"ନା, ମୁଁ ତ କିଛି ବିପରୀତ ରୀତି ପ୍ରଦର୍ଶନ କରି ନାହିଁ । ମୁଁ ମୋର ପିତାଙ୍କୁ ପ୍ରଣାମ କରିଛି । ପିତାଙ୍କୁ ପ୍ରଣାମ କରିବା ପୁତ୍ରର ଧର୍ମ ।"

ବ୍ରହ୍ମା ହସି ହସି କହିଲେ—"ଆପଣଙ୍କର ପୁଣି ପିତାମାତା କିଏ ସେ ? ଆପଣ ଜଗତର ପିତା, ମାତା, ସ୍ୱାମୀ, ସଖା ଓ ବନ୍ଧୁ । ଆପଣ ଦେବାଧିଦେବ, ଚରାଚର ଅଧିପତି । ଆପଣ ଆଉ କାହାକୁ ସିନା ଭୁଲାଇ ଦେବେ; କିନ୍ତୁ ମୋତେ ଭୁଲାଇ ପାରିବେ ନାହିଁ । ମୁଁ ଅବଶ୍ୟ ପ୍ରଥମରୁ ଆପଣଙ୍କୁ ଜାଣି ନଥିଲି; କିନ୍ତୁ ଭଗବାନ୍ ବିଷ୍ଣୁ ମୋତେ ଆପଣଙ୍କ ସ୍ୱରୂପ ସମ୍ବନ୍ଧରେ ଅବଗତ କରାଇ ଅଛନ୍ତି । ଆପଣ ସନାତନ ପୁରୁଷ । ଆପଣ ସମଗ୍ର ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ଲୟର କାରଣ । ଅଗଣିତ ବ୍ରହ୍ମା ଓ ବିଷ୍ଣୁ ଆପଣଙ୍କ ସଙ୍କଳ୍ପରେ ଜାତ ହୋଇ ପୁଣି ବିଲୟପ୍ରାପ୍ତ ହୁଅନ୍ତି । ଆପଣ ଯଜ୍ଞକୁ ସୃଷ୍ଟି କରିଛନ୍ତି ଏବଂ ଯଜ୍ଞର ଫଳଦାତା ମଧ୍ୟ ଆପଣ । ଆପଣ ଶିଷ୍ଟାଚାର ଦୃଷ୍ଟିରୁ ମୋତେ ପ୍ରଣାମ କରିଛନ୍ତି; ଏହାହିଁ ଆପଣଙ୍କର ଅନ୍ୟତମ କ୍ରୀଡ଼ା ।"

କୈଳାସପତି ଶିବ ପିତାମହଙ୍କୁ ଉଚ୍ଚାସନରେ ବସାଇ କହିଲେ—"ଭଗବନ୍ ଆପଣ ବେଦଗର୍ଭ ତଥା ସଚରାଚର ବ୍ରହ୍ମାଣ୍ଡର ଜନକ । ଆପଣଙ୍କ ସୃଷ୍ଟିରେ ସବୁକିଛି କୁଶଳ ତ ?"

ଟିକିଏ ହସି ଦେଇ କହିଲେ ବ୍ରହ୍ମା—"ଆପଣଙ୍କ ଦୟାଦୃଷ୍ଟି ନ ପଡ଼ିଲେ କୁଶଳ ସମ୍ଭବ ହେବ କିପରି ? ଆପଣ ଯେଉଁଠାରେ ଉପସ୍ଥିତ ନ ହୁଅନ୍ତି, ସେଠାରେ ମଙ୍ଗଳ ସମ୍ଭବ

ହେବ କିପରି ? ବେଦ ଓ ଯଜ୍ଞର ନିୟାମକ ଆପଣ । ଦକ୍ଷ କେବଳ ନିମିତ୍ତ ମାତ୍ର ଥିଲା । ପ୍ରକୃତରେ ଆପଣ ସବୁ କରନ୍ତି ।

କରି କରାଉ ଥାଉ ଗୁହ୍ୟ । ତୋ ବିନୁ ଆନ ଗତି ନାହିଁ ।

ଆପଣ ପାପୀମାନଙ୍କୁ ଦଣ୍ଡସ୍ୱରୂପ ନରକ ଏବଂ ପୁଣ୍ୟାତ୍ମାମାନଙ୍କୁ ମୋକ୍ଷଗତି ପ୍ରଦାନ କରନ୍ତି; କିନ୍ତୁ ସ୍ଥଳବିଶେଷରେ ମଧ୍ୟ ଏହାର ବ୍ୟତିକ୍ରମ ଦେଖାଯାଏ । ଏହିପରି ଗୋଟିଏ ଉଦାହରଣ ଦକ୍ଷଯଜ୍ଞରେ ଦେଖାଯାଇଛି । ସେ ଗୋଟିଏ ପୁଣ୍ୟମୟ ଯଜ୍ଞ ଆରମ୍ଭ କରି ସତ; କିନ୍ତୁ ସମ୍ପୂର୍ଣ୍ଣ ହୋଇପାରିଲାନାହିଁ । ଯେତେ ବଡ଼ ପୁଣ୍ୟକାର୍ଯ୍ୟ ହେଉ ପଛକେ; ଆପଣଙ୍କୁ ଉପେକ୍ଷା କରିଗଲେ, ତାହା ପରିପୂର୍ଣ୍ଣ ହେବ କିପରି ?"

ବ୍ରହ୍ମାଙ୍କ ଭୂମିକାରୁ ଶିବ ବେଶ୍ ବୁଝିପାରିଲେ ଯେ, ବ୍ରହ୍ମାଦି ଦେବଗଣ ଦକ୍ଷଯଜ୍ଞ ସମ୍ବନ୍ଧରେ ଆସିଛନ୍ତି । ତେଣୁ ଅତ୍ୟନ୍ତ ପ୍ରଶାନ୍ତ ଚିତ୍ତରେ କହିଲେ—"ବ୍ରହ୍ମନ୍, ଦକ୍ଷ ମୋତେ ନିମନ୍ତ୍ରଣ ଦେଇ ନଥିବାରୁ, ମୋ ମନରେ ତିଳେ ହେଲେ ଦୁଃଖ ଜାତ ହୋଇନଥିଲା । ସେ ଯଜ୍ଞର କର୍ତ୍ତା; ନିମନ୍ତ୍ରଣ ଦେବା ଦାୟିତ୍ୱ ତା'ର; କିନ୍ତୁ ନିଜ କନ୍ୟା ଅତ୍ୟନ୍ତ ଆଗ୍ରହ ତଥା ଉତ୍କଣ୍ଠାରେ ସେଠାରେ ଉପସ୍ଥିତ ହେଲା, ସେ ସାମାନ୍ୟ ଦି'ପଦ ମଧୁର ବଚନରେ ତାକୁ ଆଶ୍ୱାସନା ଦେଲା ନାହିଁ ? ସେହି ଅପମାନରେ ସତୀ ପ୍ରାଣତ୍ୟାଗ କଲେ । ଏଇଥିପାଇଁ ମୋ ମନରେ କ୍ରୋଧ ଉତ୍ପନ୍ନ ହେଲା । ମୋର କ୍ରୋଧ ଦେଖି ଶିବଗଣମାନେ ଦକ୍ଷର ଯଜ୍ଞକୁ ଧ୍ୱଂସ କରିଦେଲେ ।"

ଏହା ଶୁଣି ବ୍ରହ୍ମା ହସି ହସି କହିଲେ – "ଦେବାଧିଦେବ ! ଆପଣଙ୍କୁ କ୍ରୋଧ ସ୍ପର୍ଶ କରିପାରେ ନାହିଁ । ଆପଣଙ୍କ ବିଷୟରେ ଅବା କ'ଣ କହିବି; ଆପଣଙ୍କ ଭକ୍ତମାନେ ମଧ୍ୟ କ୍ରୋଧ ପ୍ରକାଶ କରନ୍ତି ନାହିଁ । କ୍ରୋଧ ଏକ ପାଶବିକ ବୃତ୍ତି । ସଜ୍ଜନମାନେ ଆଦୌ କ୍ରୋଧ ପ୍ରକାଶ କରନ୍ତି ନାହିଁ । ଆପଣ ଜଗତର ସ୍ୱାମୀ ଓ ଜନକ । ଆପଣଙ୍କ ବିରୁଦ୍ଧରେ ଯାଇ ଜଗତରେ କିଏ ଅବା ଜୀବିତ ରହି ପାରିବ ?"

ଏହା ଶୁଣି କହିଲେ ଭୂତନାଥ—"କୁହନ୍ତୁ ପିତାମହ ! ସେଦିନ ଆପଣଙ୍କ ସମ୍ମୁଖରେ ଦକ୍ଷ ମୋତେ ଅପମାନିତ କଲା; କିନ୍ତୁ ମୁଁ ପଦଟିଏ ହେଲେ ପ୍ରତିବାଦ କଲିନାହିଁ । ସେ ମୋତେ ଯଜ୍ଞକୁ ନିମନ୍ତ୍ରଣ ଦେଲାନାହିଁ । ଏହା କ'ଣ ତା'ର ଉଚିତ କର୍ମ କି ?"

ଏହାର ଉତ୍ତରଦେଇ କହିଲେ ବ୍ରହ୍ମା—"ସଦାଶିବ ଯେଉଁମାନେ କର୍ମକାଣ୍ଡ ଉପରେ ଆସ୍ଥା ସ୍ଥାପନ କରନ୍ତି, ସେମାନଙ୍କ ଚିତ୍ତ ଆଦୌ ପ୍ରଶାନ୍ତ ନୁହେଁ । ସେମାନେ ଅନ୍ୟର ବିଭୂତି ଦେଖି ମନେ ମନେ ଈର୍ଷାପରାୟଣ ହୋଇ ପଡ଼ନ୍ତି । ସେମାନେ ଅନ୍ୟକୁ କର୍କଶବାଣୀ କହି ଆତ୍ମସୁଖ ଲାଭ କରନ୍ତି । ହୁଏତ, ତା ଫଳରେ ସେମାନଙ୍କର ସାମୟିକ ଉନ୍ନତି ହୋଇପାରେ; କିନ୍ତୁ ପରିଣାମ ଅତ୍ୟନ୍ତ ଦୁଃଖଜନକ ହୋଇଥାଏ । ଏଭଳି କ୍ରୂରକର୍ମୀ

ଲୋକଙ୍କ ପ୍ରତି ଆପଣ ଦୟାପ୍ରଦର୍ଶନ କରିବା ଉଚିତ । ଯେ ସ୍ୱୟଂ ଦୟାର ପାତ୍ର, ତା' ପ୍ରତି କ୍ରୋଧ ପ୍ରକାଶ କରି ଲାଭ କ'ଣ ?"

ମହାଦେବ ଏହା ଶୁଣି କହିଲେ—"ବ୍ରହ୍ମେ ! ମୁଁ ପ୍ରଥମରୁ ଦକ୍ଷର ବ୍ୟବହାର ପ୍ରତି କ୍ରୋଧ ପ୍ରକାଶ କରିନଥିଲି; କିନ୍ତୁ ସେ ଦୁରାତ୍ମା ବିନା କାରଣରେ ମୋ' ପ୍ରତି ଦ୍ୱେଷ ପୋଷଣ କରିବାକୁ ଲାଗିଲା ।"

ବ୍ରହ୍ମା ଏହା ଶୁଣି କହିଲେ—"ହେ ବୃଷଧ୍ୱଜ ! ବିଷ୍ଣୁଙ୍କ ମାୟାଚକ୍ରରେ ପଡ଼ି ପ୍ରାଣୀ ହିତାହିତ ଜ୍ଞାନ ଭୁଲିଯାଏ । ବୁଦ୍ଧିଭ୍ରଷ୍ଟ ହୋଇଗଲେ ମଣିଷ ମନରେ ଭେଦଭାବ ଉତ୍ପନ୍ନ ହୋଇଥାଏ । ଅଜ୍ଞମାନେ ଅଜ୍ଞାନତାବଶତଃ ମହାପୁରୁଷମାନଙ୍କୁ ନିନ୍ଦା କରିଥାଆନ୍ତି । ତେଣୁ ମହାପୁରୁଷମାନେ ନିଜର ମହାନୁଭବତାରେ ସେମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରିବା ଉଚିତ ନୁହେଁ କି ?"

ଆଶୁତୋଷ ଶିବ ସନ୍ତୁଷ୍ଟ ହୋଇ କହିଲେ—"ବ୍ରହ୍ମନ୍ ! ଆପଣ ମୋତେ ଆଜ୍ଞା ଦିଅନ୍ତୁ । ଯାହା ଆପଣ କହିବେ, ମୁଁ ତାହା କରିବାକୁ ପ୍ରସ୍ତୁତ ଅଛି !"

ବ୍ରହ୍ମା ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ—"ମୁଁ ପୁଣି ଆପଣଙ୍କୁ ଆଜ୍ଞା ଦେବି କଅଣ ? ଆପଣ ଅନ୍ତର୍ଯାମୀ । ଆପଣଙ୍କୁ କୌଣସି କଥା ଅଜଣା ନାହିଁ । ଦକ୍ଷ ମାୟା-ମୋହିତ ଗୋଟିଏ ପ୍ରାଣୀ । ସେ କର୍ମକାଣ୍ଡ ବଳରେ ସବୁ କିଛି କରିବାକୁ ଚାହୁଁଥିଲା । ଆପଣ ତା'ର ମୂର୍ଖତା ପ୍ରତି ଦୃଷ୍ଟି ନଦେଇ ତା'ପ୍ରତି ଦୟା ପ୍ରଦର୍ଶନ କରନ୍ତୁ ।"

ଶିବ ସଙ୍ଗେ ସଙ୍ଗେ ହାତ ଯୋଡ଼ି କହିଲେ—"ଆପଣ ଯାହା ଆଜ୍ଞା ଦେବେ, ମୁଁ ତାହା ପାଳନ କରିବି !"

"ମୁଁ ଆପଣଙ୍କୁ ଆଜ୍ଞା ଦେବି କଅଣ ? ଆପଣଙ୍କ ରୁଦ୍ରତେଜରେ ଯାହା ଧ୍ୱଂସ ହୋଇ ଯାଇଛି, ତାକୁ ଆପଣ ପୁନଃ ପ୍ରତିଷ୍ଠିତ କରନ୍ତୁ; ଏହାହିଁ ମୋର ପ୍ରାର୍ଥନା" କହିଲେ ପିତାମହ ।

ଶିବ ଅତ୍ୟନ୍ତ ନମ୍ର ସ୍ୱରରେ କହିଲେ—"ମୁଁ ଆଉ କରିବି କ'ଣ ? ଆପଣ ଦକ୍ଷର ଯଜ୍ଞ ପୂର୍ତ୍ତି କରିବାକୁ ଇଚ୍ଛା କରୁଛନ୍ତି, ତାହାହିଁ କରନ୍ତୁ । ମୁଁ ମୋର ସାଧ୍ୟମତେ ଆପଣଙ୍କୁ ସାହାଯ୍ୟ କରିବି !"

"ମୁଁ ଯେତେ ଯାହା କଲେ କ'ଣ ଯଜ୍ଞାନୁଷ୍ଠାନ ସମ୍ପୂର୍ଣ୍ଣ ହେବ କି ? ଆପଣ ଯାହା ନଷ୍ଟ କରିଛନ୍ତି, ତାହା ପୂରଣ କରନ୍ତୁ" କହିଲେ ପିତାମହ ।

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ବ୍ରହ୍ମା ଓ ଶିବଙ୍କ ବାକ୍ୟାଳାପ ଶୁଣି ଉପସ୍ଥିତ ଦେବ ଓ ଋଷିଗଣଙ୍କ ମନରେ ସନ୍ତୋଷ ଜାତ ହେଲା । ସମସ୍ତେ ଭାବିଲେ ଯେ, ସଦାଶିବ ସମସ୍ତଙ୍କ ଅପରାଧ କ୍ଷମା କରି ଦେଇଛନ୍ତି । ଏଥର ସଦାଶିବ ଚାହିଁଲେ ଦକ୍ଷର ଅପୂର୍ଣ୍ଣ ଯଜ୍ଞ ପରିପୂର୍ଣ୍ଣ ହୋଇଯିବ । ଯାହା ତାଙ୍କର ଇଚ୍ଛା !"

## ଛପ୍ପୟ

"ସୁନି ବିଧି କୋ ଆଗମନ ଉଠେ ସମ୍ଭ୍ରମ ସହ ଶ୍ରୀହର ।
ଅଗଓ୍ୱାନୀ କୁଁ ଗୟେ ଚରନ ମହଁ ନାୟୋ ନିଜ ସିର ।।
କରତ ଦଣ୍ଡବତ ଦେଖି ଶମ୍ଭୁ ବିଧି ତୁରତ ଉଠାୟେ ।
ଶ୍ରଦ୍ଧା ଭକ୍ତି ସମେତ ପ୍ରେମତେଂ ହୟେ ଲଗାୟେ ।।
ବୋଲେ ବ୍ରହ୍ମା ଦେବ ତୁମ୍, ମକରୀ ସମ ଜଗକୁଁ ରଚହୁ ।
ରଚି ବାଲେ କ୍ରୀଡ଼ା କରହୁ ଜବ ଚହୋ ଛିନ ମହଁ ହରହୁ ।।"



## ଦକ୍ଷଯଜ୍ଞ ପୂର୍ଣ୍ଣପାଇଁ
## ଶିବଙ୍କ ଆଶୀର୍ବାଦ

"ନାଘଂ ପ୍ରଜେଶ ବାଲାନାଂ ବର୍ଣ୍ଣୟେ ନାନୁଚିନ୍ତୟେ ।
ଦେବମାୟାଭିଭୂତାନାଂ ଦଣ୍ଡସ୍ତତ୍ର ଧୃତୋ ମୟା ॥"

(ଭାଗବତ ୪।୭।୨)

ଛପ୍‌ପୟ

"ଯଜ୍ଞ ଅଧୂରେ ଭୟୋ କୃପା କର ଦକ୍ଷ ଜିଓ୍ୱାଓ ।
ଭୃଗୁକୀ ଦାଢ଼ୀ ଲଗୈ ଦେବ ଭଗ ନେତ୍ର ବନାଓ ॥
କସ ପୂଷା ବନୁ ଦାଁନ୍ତ ତ୍ୟାୟୁଁ କଛୁ ଯୁକ୍ତି ବତାଓ ।
କସ ଜାନୋଂ ତସ ପ୍ରଭୋ ଯଜ୍ଞ କୁଁ ପୂର୍ଣ୍ଣ କରାଓ ॥
ହର ହଁସି ବୋଲେ ଯଜ୍ଞପଶୁ କୋ ସିର ଶବ ଧଡ଼ ପୈ ଧରୋ ।
ଜୀବିତ ହୋଓ୍ୱେ ଦକ୍ଷ-ଭୃଗୁ, ଦାଢ଼ୀ ବକରା କୀ କରୋ ॥"*

---

*ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର ! ବ୍ରହ୍ମା ପ୍ରାର୍ଥନା କରନ୍ତେ ଭୋଲାନାଥ ସଦାଶିବ କହିଲେ—'ହେ ଚରାଚର ସ୍ୱାମିନ୍, ପରମାତ୍ମାଙ୍କ ମାୟାରେ ବଶବର୍ତ୍ତୀ ବାଲବୁଦ୍ଧିସମ୍ପନ୍ନ ଲୋକମାନଙ୍କ ଅପରାଧକୁ ମୁଁ ଗ୍ରହଣ କରେନାହିଁ କିମ୍ବା ସେ ସମ୍ବନ୍ଧରେ ମଧ୍ୟ ବିଚାର କରେନାହିଁ । କେବଳ ସେମାନଙ୍କୁ ସଚେତ କରିବା ନିମିତ୍ତ ମୁଁ ସାମାନ୍ୟ ଦଣ୍ଡରେ (ଦକ୍ଷଙ୍କୁ) ଦଣ୍ଡିତ କରିଛି ।"

ମହାପୁରୁଷଙ୍କ ଅପମାନ କରିବା ଫଳରେ ମଣିଷର ସମସ୍ତ ସଦଗୁଣ ନଷ୍ଟ ହୋଇ ଯାଏ । ମହାପୁରୁଷମାନେ ଅବଶ୍ୟ ଅପରାଧୀକୁ କ୍ଷମା କରିଦିଅନ୍ତି; କିନ୍ତୁ ପ୍ରକୃତି ତାକୁ ଦଣ୍ଡ ନଦେଇ ମୁକ୍ତ ଦିଏନାହିଁ । ଯେଉଁ ବ୍ୟକ୍ତି ମହାପୁରୁଷଙ୍କ ଅପମାନିତ କରେ, ସେ କେବେ-ହେଲେ ଦଣ୍ଡରୁ ତ୍ରାହି ପାଏନାହିଁ । ତାଙ୍କ ଅବଗୁଣର ଚିହ୍ନ ନିଶ୍ଚିତ ଭାବରେ ରହିଯାଏ । ତେଣୁ ଅଜ୍ଞାନତାବଶତଃ ମହାପୁରୁଷଙ୍କଠାରେ ଦ୍ରୋହ ଆଚରଣ କରିଗଲେ, ତାଙ୍କର ଶରଣ ପଶିବା ବ୍ୟତୀତ ଜଗତରେ ଅନ୍ୟ କିଛି ହେଲେ ଉପାୟ ନାହିଁ ।

ମୈତ୍ରେୟ କହିଲେ—"ହେ ବିଦୁର, ବ୍ରହ୍ମା କୈଳାସରେ ପ୍ରବେଶ କରି ଶିବଙ୍କ ଶାନ୍ତ ସ୍ୱରୂପ ଦେଖି କହିଲେ—ଯାହା ହେବାର ତ ହୋଇଗଲାଣି, ଏଥର ଦକ୍ଷ କିପରି ଦଣ୍ଡରୁ ମୁକ୍ତିଲାଭ କରିବ, ଆପଣ ତ ତାହିଁ ଚିନ୍ତା କରନ୍ତୁ; ଏମାନେ ମୂର୍ଖତାର ଚରମ ସୋପାନରେ ଉପନୀତ ହୋଇଛନ୍ତି ।"

ତାହା ଶୁଣି ଶିବ କହିଲେ—"ବ୍ରହ୍ମନ୍, ତା'ହେଲେ ଆପଣ ଏହାର ଉପାୟ ବତାଇ ଦିଅନ୍ତୁ । ଯଜମାନ ମରିଯିବା ପରେ ଯଜ୍ଞ ପୂର୍ଣ୍ଣ ହେବ କିପରି ?"

ବ୍ରହ୍ମା ଉତ୍ତର ଦେଲେ—"ମାରିବା ଓ ଜିଆଇବା ସବୁ କିଛି ଆପଣଙ୍କ କାର୍ଯ୍ୟ । ଆପଣ ମାରି ପାରନ୍ତି ଏବଂ ମୃତ ପ୍ରାଣୀକୁ ମଧ୍ୟ ବଞ୍ଚାଇ ପାରନ୍ତି । ମୋର ପ୍ରାର୍ଥନା, ଆପଣ ସମସ୍ତଙ୍କୁ ପୂର୍ବପରି କରିଦିଅନ୍ତୁ ।"

ଶିବ ସନ୍ତୁଷ୍ଟ ହୋଇ କହିଲେ—"ଏହା କିଛି ବଡ଼କଥା ନୁହେଁ ।"

ବ୍ରହ୍ମା କହିଲେ—"ସଦାଶିବ, ଆପଣଙ୍କ ପାର୍ଷଦଗଣ କ୍ରୋଧୋନ୍ମତ୍ତ ହୋଇ ଯାହା ଯାହା ଅନିଷ୍ଟ କରିଛନ୍ତି, ତା'ର ସମାଧାନ ହେବା ଉଚିତ । ଯେଉଁମାନଙ୍କ ଦାଢ଼ୀ ଲୁଣ ସମୂଳେ ନଷ୍ଟ ହୋଇଯାଇଛି ଏବଂ ଯାହାର ଦାନ୍ତ ଝଡ଼ିଯାଇଛି, ସେମାନଙ୍କ ସମ୍ବନ୍ଧରେ ବିଚାର କରନ୍ତୁ । ସେମାନେ ପୂର୍ବପରି ସୁଦର୍ଶନ ହୋଇ ଯାଆନ୍ତୁ; ଏହାହିଁ ମୋର ଅନୁରୋଧ ।"

ଶିବ ଟିକିଏ ହସିଦେଇ କହିଲେ—"ସବୁ କିଛି ଆପଣଙ୍କ ଅନୁରୋଧମତେ ହୋଇଯିବ; କିନ୍ତୁ ଯଜ୍ଞରେ ମୋର ଯେଉଁ ଅଂଶ ପାଇବାର କଥା ଆପଣ ସେ ବିଷୟରେ କିଛି ଚିନ୍ତା କରିଛନ୍ତି ତ ?"

ବ୍ରହ୍ମା ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"ଭଗବନ୍, ଏହା ନ ହେଲେ ଚଳିବ କିପରି ? ଯଜ୍ଞରେ ଯାହା କିଛି ଅବଶେଷ ରହିଛି, ତାହା ଆପଣଙ୍କର ଅଂଶ ।"

ଏହା କହି ବ୍ରହ୍ମା ଦେବତା ଓ ଋଷିମାନଙ୍କ ମତ ନିଅନ୍ତେ; ସମସ୍ତେ ଏକସ୍ୱରରେ କହିଲେ—"ଆମେମାନେ ଆପଣଙ୍କ ପ୍ରାର୍ଥନା ସ୍ୱୀକାର କରୁଛୁ ।"

ଶିବ ହସି ହସି କହିଲେ—"ତା'ହେଲେ କ'ଣ ମୋତେ ଆଜିଠାରୁ ଏହିପରି ଭାବରେ ଯଜ୍ଞର ଅବଶେଷହିଁ ଅଂଶରୂପେ ମିଳିବ ?"

"ନା···ମହାଶୟ, ଆପଣ ତା' କାହିଁକି ଭାବୁଛନ୍ତି ? ଯଜ୍ଞରେ ଯାହା କିଛି ବଳିଥାଏ ତାହାକୁ ଯଜ୍ଞସ୍ୱାମୀ ଗ୍ରହଣ କରନ୍ତି । ଆପଣ ହେଉଛନ୍ତି ଯଜ୍ଞର କର୍ତ୍ତା, ସ୍ୱୟଂ ସ୍ୱାମୀ । ତେଣୁ ଯଜ୍ଞର ଅବଶେଷ ଉପରେ ଆପଣଙ୍କର ପୂର୍ଣ୍ଣ ଅଧିକାର ରହିଛି । ଏହା କେହି ଦୟାକରି ଆପଣଙ୍କୁ ଦେଉନାହିଁ ।"

ଆଶୁତୋଷ ପରମ ସନ୍ତୋଷରେ କହିଲେ—"ଠିକ୍ ଅଛି, ମୁଁ ସେଇଥିରେ ସନ୍ତୁଷ୍ଟ !"

ବ୍ରହ୍ମା ସନ୍ତୁଷ୍ଟ ହୋଇ କହିଲେ – "ଆଜିଠାରୁ ଏ' ସମ୍ବନ୍ଧରେ ଆପଣ ଅନ୍ୟତ୍ର ଚର୍ଚ୍ଚା କରିବେ ନାହିଁ । ଏହା ଫଳରେ ଦେବତା ଓ ପିତୃଗଣ ନିତାନ୍ତ ଲଜ୍ଜିତ ହେବେ ।"

ବ୍ରହ୍ମାଙ୍କର ଦୂରଦର୍ଶିତାରେ ସନ୍ତୁଷ୍ଟ ହୋଇ କହିଲେ ସଦାଶିବ—"ମହାରାଜ, ମୁଁ ଜାଣେ, ଏହି ପ୍ରାଣୀମାନେ ମାୟାରେ ମୋହିତ ହୋଇଛନ୍ତି । ତେଣୁ ସେମାନଙ୍କ ଦୋଷତ୍ରୁଟି ପ୍ରତି ମୁଁ ଦୃଷ୍ଟି ଦିଏନାହିଁ । ମୁଁ ଅନ୍ୟତ୍ର ଏହି ଘଟଣାର ଚର୍ଚ୍ଚା କରିବି ନାହିଁ ।"

"ତା'ହେଲେ···" ହସି ହସି କହିଲେ ପିତାମହ—"ଆପଣ ଏତେ ନଟକୁଟ ଲଗାଇଲେ କାହିଁକି ?"

ଶିବ ସମୁଚିତ ଉତ୍ତର ଦେଇ କହିଲେ—"ଦେଖନ୍ତୁ, ଆପଣମାନେ ମୋତେ ପଶୁପତି ବୋଲି କହନ୍ତି । ପଶୁପାଳକ ପ୍ରତ୍ୟେକ ପଶୁକୁ ଆଦର ଯତ୍ନ କରିଥାଏ । କାହାରି ପ୍ରତି ତା'ମନରେ ଲେଶମାତ୍ର ଦ୍ୱେଷ ରହି ନଥାଏ । ତଥାପି ଯେଉଁ ପଶୁ ନିତାନ୍ତ ଉଚ୍ଛୃଙ୍ଖଳ ହୋଇଯାଏ, ତାକୁ ଦଣ୍ଡ ନଦେଇ ପଶୁପାଳକ ଛାଡ଼ି ଦିଏନାହିଁ । ସେହି ପରିପ୍ରେକ୍ଷୀରେ ମୁଁ ଦକ୍ଷକୁ ତା'ର ଉଚ୍ଛୃଙ୍ଖଳତା ଲାଗି ଦଣ୍ଡବିଧାନ କରିଛି ।"

"ହେଉ ସେକଥା ଛାଡ଼ନ୍ତୁ, ଆପଣଙ୍କ ପକ୍ଷରେ ସବୁ କିଛି ସମ୍ଭବ । ଦକ୍ଷକୁ କିପରି ପ୍ରାଣଦାନ କରାଯିବ, ସେହି ବିଷୟରେ ଆପଣ ଚିନ୍ତା କରନ୍ତୁ ।"

ଶିବ ହସି ହସି କହିଲେ—"ଦକ୍ଷ ପାଇଁ ମୁଁ ଗୋଟିଏ ଉପାୟ ଚିନ୍ତା କରିଛି । ତା'ର ମୁଣ୍ଡ ଅଗ୍ନିରେ ଜଳି ଧ୍ୱଂସ ହୋଇ ଯାଇଛି । ତେଣୁ ତା' ଗଣ୍ଡିରେ ଗୋଟିଏ ଛେଳିମୁଣ୍ଡ ଲଗାଇଦେବି । ସେ ଛେଳି ତୁଣ୍ଡରେ କଥା କହିଲେ ମୋତେ ବେଶ୍ ଭଲ ଲାଗିବ ।"

"ହେଲା···, ବିଚରା ପ୍ରାଣଦାନ ପାଇବ ତ । ଆଚ୍ଛା, ଏହି ଭଗଦେବତାର ଚକ୍ଷୁ ନଷ୍ଟ ହୋଇ ଯାଇଛି । ଏ କିପରି ନିଜର ଯଜ୍ଞଭାଗ ଦେଖିବ ?" କହିଲେ ବ୍ରହ୍ମା ।

"ସେ ଆଜିଠାରୁ ମିତ୍ରଙ୍କ ଚକ୍ଷୁରେ ଦେଖିବେ । ମିତ୍ର ତାଙ୍କ ହାତ ଧରିବାମାତ୍ରେ ସେ ସମସ୍ତ ଦ୍ରବ୍ୟ ନିଜ ଆଖିରେ ଦେଖିଲା ପରି ଦେଖି ପାରିବେ ।" କହିଲେ ମହାଦେବ ।

"ହେଲା···, କିନ୍ତୁ ପୁଷା ବିଚରା ଦନ୍ତହୀନ ଅବସ୍ଥାରେ କିପରି ନିଜର ଯଜ୍ଞଭାଗ ଗ୍ରହଣ କରିବ ?" ପଚାରିଲେ ବ୍ରହ୍ମା ।

"ପୁଷା ପାଇଁ ମଧ୍ୟ ମୁଁ ବ୍ୟବସ୍ଥା କରୁଛି । ଆଜିଠାରୁ ଯଜମାନମାନେ ଯଜ୍ଞରେ ପୁଷାଙ୍କ ପାଇଁ ଚୂର୍ଣ୍ଣଦ୍ରବ୍ୟ ଅର୍ପଣ କରିବେ । ତେଣୁ ତାଙ୍କ ପକ୍ଷରେ ଯଜ୍ଞଭାଗ ଖାଇବାରେ କିଛି ଅସୁବିଧା ହେବ ନାହିଁ ।" କହିଲେ ଶିବ ।

"ଯାହେଉ, ପୁଷାଙ୍କ ସମସ୍ୟାର ସମାଧାନ ହୋଇଗଲା । ସେ ଆଜିଠାରୁ 'ପିଷ୍ଟଭୁକ୍' ରୂପେ କଥିତ ହେବେ । ଏହାଙ୍କ ଅଂଶ ଯଜ୍ଞରେ ପୃଥକ୍ ଭାବରେ ରହିବ । ତେବେ···, ଯେଉଁ ଦେବଗଣଙ୍କ ଅଙ୍ଗଭଙ୍ଗ ହୋଇଛି, ସେମାନଙ୍କ ବିଷୟରେ ଆପଣ କଣ ଚିନ୍ତା କରିଛନ୍ତି ?" ପଚାରିଲେ ଚତୁରାନନ ।

"ମୋ ଆଶୀର୍ବାଦରୁ ଏମାନେ ସୁସ୍ଥ ହୋଇଯିବେ ଏବଂ ସେମାନେ ନିଜନିଜର ପୂର୍ବ ଅବସ୍ଥା ଫେରିପାଇବେ ।" କହିଲେ ଶିବ ।

"ଆଚ୍ଛା, ପୁରୋହିତ ଭୃଗୁଙ୍କର ଅବସ୍ଥା କ'ଣ ହେବ ? ତାଙ୍କର ଦାଢ଼ି ଜଣ ସବୁ କିଛି ମୂଳରୁ ଉପୁଡ଼ି ଯାଇଛି । ତାଙ୍କ ପାଇଁ ଆପଣ କିଛି ବ୍ୟବସ୍ଥା କରନ୍ତୁ ।" କହିଲେ ବ୍ରହ୍ମା ।

ସଦାଶିବ ନିଜ ହାସ୍ୟ ସମ୍ବରଣ କରି କହିଲେ—"ଏହାଙ୍କ ମୁହଁରେ ଛେଳି ଦାଢ଼ି ଲଗାଇ ଦେଲେ ନିତାନ୍ତ ଅସୁନ୍ଦର ଦେଖାଯିବ ନାହିଁ । ଭୂତପ୍ରେତମାନେ ଏହାଙ୍କ ଦାଢ଼ି ଜଣ ଉପାଡ଼ି ଅଗ୍ନିରେ ସ୍ୱାହା କରି ଦେଇଛନ୍ତି । ଏହି ବ୍ୟବସ୍ଥା ବ୍ୟତୀତ ଅନ୍ୟ କିଛି ଉପାୟ ନାହିଁ ।

ବ୍ରହ୍ମା ପରମ ସନ୍ତୋଷ ଲାଭ କରି କହିଲେ—"ଦେବାଧିଦେବ, ଆପଣ ସର୍ବସମର୍ଥ । ଆପଣ ଯାହା ଇଚ୍ଛା କରିବେ ତାହା ହେବ । ଆପଣଙ୍କ ବାକ୍ୟକୁ ଅନ୍ୟଥା କରିବାର ଶକ୍ତି କାହାର ନାହିଁ । ଆପଣ ଏଥର ଅନୁଗ୍ରହ କରି ଯଜ୍ଞସ୍ଥଳକୁ ବିଜେ କରନ୍ତୁ । ଆପଣଙ୍କ ଉପସ୍ଥିତ ହେବାମାତ୍ରେ ଯଜ୍ଞବିଧି ସମ୍ପୂର୍ଣ୍ଣ ହେବ । ଆପଣ ଯେଉଁ ବ୍ୟବସ୍ଥା କରିଦେଲେ ସେହି ଅନୁସାରେ ସମସ୍ତ ବିଧି ସମ୍ପୂର୍ଣ୍ଣ କରାଯିବ ।"

ଏହାପରେ ପିତାମହ ଦେବତା, ପିତର ଓ ମୁନିମାନଙ୍କଆଡ଼କୁ ଚାହିଁ କହିଲେ—"ଆପଣମାନେ ଏଥିରେ ଏକମତ ତ ?"

ସମସ୍ତେ ସମସ୍ୱରରେ ଉତ୍ତର ଦେଲେ—"ବେଶ୍, ବେଶ୍ ଏହା ସୁନ୍ଦର ବ୍ୟବସ୍ଥା । ଏଥିରେ ଆମମାନଙ୍କର କୌଣସି ଆପତ୍ତି ନାହିଁ । ଯା'ହେଉ ପଛକେ, ବେଦବିହିତ ଯଜ୍ଞଟି ସମ୍ପୂର୍ଣ୍ଣ ହେବା ଆବଶ୍ୟକ !"

ମୈତ୍ରେୟ ମୁନି କହିଲେ —"ହେ ବିଦୁର, ଏହି ପ୍ରକାର ବ୍ୟବସ୍ଥା ହୋଇଯିବା ପରେ କହିଲେ ବ୍ରହ୍ମା—"ହେ ସଦାଶିବ, ଆପଣଙ୍କୁ ଯଜ୍ଞସ୍ଥଳୀକୁ ଯିବାକୁ ପଡ଼ିବ । ଆପଣଙ୍କ ତତ୍ତ୍ୱାବଧାନରେ ଦକ୍ଷଯଜ୍ଞରେ ପୂର୍ଣ୍ଣାହୁତି ଦିଆଯିବ ।"

ବ୍ରହ୍ମାଙ୍କର ଅନୁରୋଧ ସଦାଶିବ ସ୍ୱୀକାର କରି ସମସ୍ତଙ୍କ ସହିତ ଯଜ୍ଞସ୍ଥଳକୁ ଯିବାଲାଗି ଉଦ୍ୟତ ହୋଇଗଲେ ।

## ଛପ୍ପୟ

"ମିତ୍ର ନେତ୍ର ତେଂ ନିରଖି ଯଜ୍ଞ ଭଗ ଅପନୋଂ ପାୱେଂ ।
ପୂଷା ଯଣ୍ଡ୍ ପିସେ ପୋପଲେ ମୁଖତେଂ ଖାୱେଂ ।।
ଅଧ୍ୱର୍ଯ୍ୟୁ ନିଜ କାଜ ଅଶ୍ୱିନୀ କରତେ ଲେୱେଂ ।
ଟୂଟେ ଜିନକେ ହାଥ ଯଣ୍ଡୀ ପୂଷା କର ଜେୱେଂ ।।
ଛିନ୍ନ ଭିନ୍ନ ଜିନକେ ଭୟେ, ଅଙ୍ଗ ନୟେ ଫିରତେଂ ଲଗେଂ ।
ଜାଓ ସବ୍‌କେ ଦୁଃଖ ଦୂରିତ, ଦେଖତ ଦେଖତ ହୀ ଭଗେଂ ।।"



## ଦକ୍ଷଯଜ୍ଞର ପୁନରୁଦ୍ଧାର

"ତତୋ ମୀଢ୍ୱାଂ ସମାମନ୍ତ୍ର୍ୟ ସୁନାସୀରାଃ ସହର୍ଷଭିଃ ।
ଭୂୟସ୍ତଦ୍ ଦେବଯଜନଂ ସମୀଢ୍ୱ ଦ୍ୱେଧସୋ ଯଯୁଃ ॥"

(ଭାଗବତ ୪।୭।୭)

ଛପ୍‌ପୟ

"ସାଧୁ ସାଧୁ ସବ କହେ ଶମ୍ଭୂକୀ କରେଂ ବଡ଼ାଈ ।
ବୋଲେ ବ୍ରହ୍ମା ବଢେ଼ ବଗାରୀ ବାତ ବନାଈ ॥
ଅବ ଚଲକେଂ ସବ ସାଜ ସଜ୍ର କେ ଶୀଘ୍ର ସଜାଓ ।
ଫିରତେ ରୋପୋ ଠାଟ ଯଜ୍ଞ କୁଁ ସଫଲ ବନାଓ ॥
ବିଧି ଆୟସୁ ସିର ଧାରି ଶିବ, ସବ କୁଁ ସଁଗ ଲୈ ଚଲି ଦୟେ ।
ଜକର ସିର ଧର ପୈ ଧରେ୍ୟା, ତୁରତ ଦକ୍ଷ ଜୀବିତ ଭୟେ ॥"

---

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଋଷିମାନଙ୍କ ସହିତ ଦେବଗଣ ଶିବଙ୍କୁ ଦକ୍ଷଯଜ୍ଞରେ ଉପସ୍ଥିତ ହେବାଲାଗି ନିମନ୍ତ୍ରଣ କଲେ । ତା'ପରେ ବ୍ରହ୍ମା ଶିବଙ୍କ ସହିତ ସମସ୍ତେ ଦକ୍ଷର ଯଜ୍ଞ ମଣ୍ଡପରେ ଉପସ୍ଥିତ ହେଲେ ।"

ବ୍ୟକ୍ତିର ଅହଙ୍କାର ଚୂର୍ଣ୍ଣ ବିଚୂର୍ଣ୍ଣ ହେବା ପର୍ଯ୍ୟନ୍ତ ଅହଙ୍କାର ତା' ହୃଦୟରେ ରହିଥାଏ । କୌଣସି ଏକ ଦୈବୀ ପ୍ରକୋପରୁ ତା'ର ଐଶ୍ୱର୍ଯ୍ୟ ନଷ୍ଟ ହୋଇଗଲେ, ସେ ଉପଯୁକ୍ତ ଶିକ୍ଷା ଲାଭକରେ । ସେତେବେଳେ ସେ ଚିନ୍ତାକରେ—'ଆରେ...ମୁଁ ଅହଙ୍କାରରେ ବଶୀଭୂତ ହୋଇ କି ଅକର୍ମ କରିଛି ! ପଶ୍ଚାତ୍ତାପ କଲେ, ମନରୁ ମଳିନତା ଧୋଇ ହୋଇଯାଏ ଏବଂ ତତ୍ପରେ ତା'ର ମନରେ ଦିବ୍ୟଭାବ ପ୍ରକଟିତ ହୁଏ । ସାଧାରଣତଃ ମନୁଷ୍ୟ ଧନ ଗର୍ବରେ ମତ୍ତ ହୋଇ ପୂଜ୍ୟପୂଜାର ବ୍ୟତିକ୍ରମ କରିଥାଏ । ସେହି ଧନ ଗର୍ବ ଚୂର୍ଣ୍ଣ ହୋଇଗଲେ ସେ ଠିକ୍ ମାର୍ଗକୁ ଆସିଥାଏ । ଦକ୍ଷର ଗର୍ବ ଚୂର୍ଣ୍ଣ ହୋଇ ଯାଆନ୍ତେ ସେ ସଦାଶିବଙ୍କ ମହତ୍ତ୍ୱ ଅନୁଭବ କରି ପାରିଲା । ଜୀବ ମାୟାର ପ୍ରପଞ୍ଚରେ ପଡ଼ି ନାନାଦି ଅକର୍ମରେ ତତ୍ପର ହୁଏ; କିନ୍ତୁ ଶିବ ହେଉଛନ୍ତି—ଆଶୁତୋଷ, ଜଗତର ମାତାପିତା; ତେଣୁ ସେ ଦୟା ପରବଶ ହୋଇ ପାପୀକୁ କ୍ଷମା କରିଥାଆନ୍ତି । ମାତାପିତା ଯଦି ଅବୋଧ ସନ୍ତାନର ଅପରାଧ କ୍ଷମା ନ କରନ୍ତି, ତେବେ ସନ୍ତାନ ମଣିଷ ହେବ କିପରି ? ପିଲାଟିର ସମସ୍ତ ପ୍ରକାର ଦୌରାତ୍ମ୍ୟ ସହନ କରି ମାତା ତାକୁ ସ୍ତନପାନ କରାଏ ଏବଂ ତା' ମୁଖରେ ଚୁମ୍ବନ ଦେଇ ତାକୁ ଭଲ ମଣିଷଟିଏ କରି ଗଢ଼ିବାଲାଗି ଯତ୍ନ କରେ । ଠିକ୍ ସେହିପରି ବିଶ୍ୱନାଥ ଶିବ ପ୍ରାଣୀଙ୍କ ପ୍ରତି ଦୟା ପରବଶ ହୋଇ ତାଙ୍କର ସମସ୍ତ ଅପରାଧକୁ ପାସୋରି ଦେଇ ସେମାନଙ୍କୁ ସୁମାର୍ଗ ଆଡ଼କୁ ଆଗେଇ ନିଅନ୍ତି ।

ମୈତ୍ରେୟ ମୁନି କହିଛନ୍ତି—"ହେ ବିଦୁର, ସମସ୍ତଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଶିବ ଦକ୍ଷଙ୍କ ଯଜ୍ଞସ୍ଥଳକୁ ଯିବାଲାଗି ଉଦ୍ୟତ ହେଲେ । ତାଙ୍କ ମନରେ ରାଗ, ଦ୍ୱେଷ ଓ ଅହଙ୍କାର ନଥିଲା । ତେଣୁ ସେ ସମସ୍ତଙ୍କ ସହିତ ଯଜ୍ଞସ୍ଥଳକୁ ପ୍ରସ୍ଥାନ କଲେ ।

"ହେ ବିଦୁର, ଦେବ, ଋଷି ଓ ବିପ୍ରଗଣ ବ୍ରହ୍ମା ତଥା ଶିବଙ୍କ ସହିତ କନଖଲ ନାମକ ସ୍ଥାନରେ ଉପସ୍ଥିତ ହେଲେ । ସେହିଠାରେ ଦକ୍ଷ ଯଜ୍ଞାନୁଷ୍ଠାନ କରୁଥିଲେ । ସେଠାରେ ଯଜ୍ଞମଣ୍ଡପ ଧ୍ୱଂସ ହୋଇ ଯାଇଥିଲା । ଯଜ୍ଞପାତ୍ରମାନ ଭାଙ୍ଗି ରୁଜି ନଷ୍ଟଭ୍ରଷ୍ଟ ହୋଇ ଯାଇଥିଲା । ସେବକମାନେ ଅନ୍ୟମନସ୍କ ଭାବରେ ନଷ୍ଟଭ୍ରଷ୍ଟ ହୋଇ ଯାଇଥିବା ଜିନିଷଗୁଡ଼ିକୁ ସଜାଇ ରଖିବାରେ ଲାଗିଥିଲେ । ସ୍ତ୍ରୀମାନେ ରୋଦନ କରୁଥିଲେ ମୋଟ ଉପରେ ଯଜ୍ଞସ୍ଥାନଟି ଶ୍ମଶାନ ପରି ଭୟଙ୍କର ଦେଖା ଯାଉଥିଲା ।

ଶିବଙ୍କ ଆଜ୍ଞାରେ ସମସ୍ତେ ନୂତନ ଆଶା ଓ ଉତ୍ସାହରେ ମାତିଯାଇ ଯଜ୍ଞ ସ୍ଥାନଟିକୁ ସଫାସଫି କରି ପରିଷ୍କାର କରିଦେଲେ । ଶିବଙ୍କ ଉପସ୍ଥିତିରେ ସେଠାରେ ବ୍ରାହ୍ମୀଶ୍ରୀ ବିରାଜମାନ କରିବାକୁ ଲାଗିଲେ ଏବଂ ଅଷ୍ଟସିଦ୍ଧି ଓ ନବନିଧି ମଧ୍ୟ ଆପଣା ଛାଏଁ ଆସି ଯଜ୍ଞ ସ୍ଥଳରେ ପହଞ୍ଚିଗଲେ । ସମସ୍ତ ପ୍ରକାର ଯଜ୍ଞ ବିଧିବିଧାନ ଏକତ୍ରିତ ହୋଇସିବାମାତ୍ରେ ବ୍ରାହ୍ମଣମାନେ ଗୋଟିଏ ଛେଳିମୁଣ୍ଡ ଆଣି ଦକ୍ଷଙ୍କ ଗଣ୍ଡିରେ ଲଗାଇଲେ । ଶିବ ଅମୃତ

ଦୃଷ୍ଟିରେ ଚାହିଁବାମାତ୍ରେ ମୃତ ଦକ୍ଷରାଜ ଜୀବିତ ହୋଇ ଉଠିଲେ । ଦକ୍ଷ ନିଦ୍ରାରୁ ଉଠିଲା-ପରି ଚାରିଆଡ଼କୁ ଚାହିଁଲେ । ତାଙ୍କ ଦୃଷ୍ଟି ସମ୍ମୁଖରେ ଶାନ୍ତ, ସୌମ୍ୟମୂର୍ତ୍ତି ଧାରଣ କରି ଶିବ ଛିଡ଼ା ହୋଇଥିଲେ । ଶିବଙ୍କ ପ୍ରତି ତାଙ୍କ ହୃଦୟରେ ଯେଉଁ ମଳିନତା ରହିଥିଲା, ଶିବଙ୍କ ଅମୃତ ଦୃଷ୍ଟିରେ କ୍ଷଣକ ମଧ୍ୟରେ ସବୁ ଧୋଇ ହୋଇଗଲା । ସେ ନିର୍ମଳ ହୃଦୟରେ ଶିବଙ୍କୁ ସ୍ତୁତି କରିବାଲାଗି ଇଚ୍ଛାକଲେ । ସେ 'ସତୀପତି' ଏହି ଶବ୍ଦ ଉଚ୍ଚାରଣ କରିବା ମାତ୍ରେ ତାଙ୍କର ସ୍ନେହମୟୀ ପୁତ୍ରୀ ସତୀଙ୍କର ସ୍ୱରୂପ ତାଙ୍କ ଆଖି ଆଗରେ ଝଲସି ଉଠିଲା । ସେ ତାଙ୍କର ଅକାଳ ବିୟୋଗରେ ମୁହ୍ୟମାନ ହୋଇ କାନ୍ଦି ପକାଇଲେ । ତାଙ୍କର କଣ୍ଠରୋଧ ହୋଇଗଲା । ସେ ଶିବଙ୍କୁ ସ୍ତୁତି କରିବାକୁ ଯେତେ ଚେଷ୍ଟାକଲେ ମଧ୍ୟ ତାଙ୍କ ତୁଣ୍ଡରୁ ପଦଟିଏ ହେଲେ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ ।

ଦକ୍ଷଙ୍କର ଅବସ୍ଥା ଲକ୍ଷ୍ୟ କରି ଆଶୁତୋଷ ଦୟାସାଗର ଶିବ ତାଙ୍କ ଆଡ଼କୁ ଅମୃତ ଦୃଷ୍ଟି ନିକ୍ଷେପ କଲେ । ଶିବଙ୍କ ଅନୁଗ୍ରହ ଲାଭକରି ଦକ୍ଷପ୍ରଜାପତି ସରଳତାର ସହ ଶିବଙ୍କ ସ୍ତୁତି ଆରମ୍ଭ କଲେ—

"ହେ ପ୍ରଭୋ, ଆପଣ ମୋର ଗୁରୁତର ଅପରାଧକୁ ଏତେ ସହଜରେ କ୍ଷମା କରିଦେବେ ବୋଲି ମୋର ଧାରଣା ନଥିଲା । ଆପଣ ମୋ' ପ୍ରତି ଦୟାକରି ମୋତେ ଉଚିତ ଦଣ୍ଡ ଦେଇଛନ୍ତି । ତା'ଫଳରେ ମୋ'ମନର ମଳିନତା ଦୂର ହୋଇଯାଇ ଅନ୍ତଃକରଣରେ ପବିତ୍ରଭାବ ଜାତ ହୋଇଛି । ମୁଁ ଜାଣେ, ଆପଣ ଦୟାସାଗର । ମୁଁ ଶତ୍ରୁଭାବ ପୋଷଣ କରି ମଧ୍ୟ ଆପଣଙ୍କ ନାମ ସ୍ମରଣ କରିଛି । ଆପଣ ଭଗବାନ୍ ବିଷ୍ଣୁଙ୍କ ପରି ଉଦାର ହୃଦୟରେ ମୋ' ଅପରାଧ କ୍ଷମା କରି, ମୋ'ପ୍ରତି ସଦୟ ହୋଇଛନ୍ତି ।"

ସଦାଶିବ ମୁଖମଣ୍ଡଳରେ ସୌମ୍ୟ ହାସ୍ୟଛଟା ଖେଳାଇ ଦେଇ କହିଲେ—"ପିତା, ମୋର ଆଜ୍ଞାରେ ଶିବଗଣ ଆସି ଆପଣଙ୍କୁ ଅନେକ ଦଣ୍ଡ ଦେଇଛନ୍ତି । ସେମାନେ କ୍ରୋଧେ ଲୁବ୍ଧ ହୋଇ ଆପଣଙ୍କ ପ୍ରତି କ୍ରୁର ବ୍ୟବହାର କରିଛନ୍ତି ।"

ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ ଦକ୍ଷ—"ପ୍ରଭୋ, ମୋ'ପ୍ରତି ଯେଉଁ ଦଣ୍ଡବିଧାନ କରାଯାଇଛି, ସେଥିରେ ମୋର କଲ୍ୟାଣ ହୋଇଛି । ଆପଣ ଜଗତର ଜନକ ତଥା ରକ୍ଷକ । ଆପଣ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ରକ୍ଷାକରନ୍ତି । ମୁଁ ଯେଉଁ ଅପରାଧ କରିଥିଲି, ଚିରକାଳ ଅଗ୍ନିଦଗ୍ଧ ହୋଇଥିଲେ ହେଁ ତା'ର ପ୍ରତିକାର ହୋଇ ନଥା'ନ୍ତା ! କିନ୍ତୁ ଆପଣ ନିଜର ଅହେତୁକୀ କୃପା ଫଳରେ ମୋ' ଅପରାଧକୁ ମାର୍ଜନ କରିଛନ୍ତି । ପ୍ରଜାପତିଙ୍କ ଯଜ୍ଞରେ ମୁଁ ଆପଣଙ୍କୁ କଦର୍ଯ୍ୟ ଭାବରେ ଭର୍ତ୍ସନା କରିଛି; କିନ୍ତୁ ଆପଣ ସେଥିପ୍ରତି ଦୃଷ୍ଟି ନଦେଇ ନିଜର ମହତ୍ତ୍ୱ ବଜାୟ ରଖିଛନ୍ତି । ତେଣୁ ହେ କରୁଣାସାଗର, ହେ ବରଦାତା ! ହେ ଭକ୍ତବତ୍ସଳ ସ୍ୱାମୀ ଆପଣ ମୋର ଅପରାଧ କ୍ଷମା କରନ୍ତୁ । ମୋତେ ଘୋର ନରକରୁ ଉଦ୍ଧାର କରନ୍ତୁ ।"

ମୈତ୍ରେୟ କହିଲେ—"ହେ ବିଦୁର, ଦକ୍ଷପ୍ରଜାପତି ନିର୍ମଳ ହୃଦୟରେ ଶିବଙ୍କୁ ପ୍ରାର୍ଥନା କରନ୍ତେ, ଆଶୁତୋଷ ସଦାଶିବ ତାଙ୍କ ପ୍ରତି ପ୍ରସନ୍ନ ହେଲେ । ତେଣୁ ଦକ୍ଷ ତାଙ୍କର ଧ୍ୱଂସପ୍ରାପ୍ତ ଯଜ୍ଞର ପୁନରୁଦ୍ଧାର ପାଇଁ ଦ୍ୱିଗୁଣ ଉତ୍ସାହରେ ଲାଗି ପଡ଼ିଲେ ।

## ଛପ୍‌ପୟ

"ନିରଖି ସନ୍ମୁଖ ଶମ୍ଭୁ ଦକ୍ଷ ହିୟ ସ୍ୱଚ୍ଛ ଭୟୋ ଅତି ।
ରୁଦ୍ର ଦ୍ରୋହ କୋ ମୈଲ ଧୁଲେୟା ବିର ବିମଲ ଭଇ ମତି ।।
ସତୀ ସୁତା କୀ ୟାଦ ପ୍ରଜାପତି କୂଁ ହ୍ୱୈ ଆଇ ।
ବାନୀ ଗଦ୍‌ଗଦ୍ ଭଇ ପ୍ରେମ ମେଂ ସୁଧି ବିସରାଇ ।।
କୈସେ ତେସେ ସେଙ୍କ ମନ ବିହୁ ବିଧି ଶିବ ବିନତୀ କରୀ ।
ଦଇ ସାନ୍ତ୍ୱନା ବିବିଧ ବିଧି, ସସୁର ନିଜ ଶିବ ନେ ହରୀ ।।



## ଦକ୍ଷଯଜ୍ଞରେ ବିଷ୍ଣୁଙ୍କ ଆବିର୍ଭାବ

"ଅଧ୍ୱର୍ୟୁଣାଽଽତ୍ତ ହବିଷା ଯଜମାନୋ ବିଶାମ୍ପତେ ।
ଧିୟା ବିଶୁଦ୍ଧୟା ଦଧ୍ୟୌ ଯଥା ପ୍ରାଦୁରଭୂଦ୍ଧରିଃ ॥
ତଦା ସ୍ୱପ୍ରଭୟା ତେଷାଂ ଦ୍ୟୋତୟନ୍ତ୍ୟା ଦିଶୋ ଦଶ ।
ମୁଷ୍ଣଂସ୍ତେଜ ଉପାନୀତ ସ୍ତାର୍କ୍ଷ୍ୟେଣ ସ୍ତୋତ୍ର ବାଜିନା ॥"

(ଭାଗବତ ୪।୭।୧୮,୧୯)

ଛପ୍‌ପୟ

"ବିଧି ହର ଆଜ୍ଞା ପାଇ ଯଜ୍ଞ ଆରମ୍ଭ କରେ୍ୟା ଫିର ।
ଋତ୍ୱିକ୍ ହୋତା ସଭ୍ୟ କୁଣ୍ଡ ଚହୁଁ ଓର ରହେ ଘିର ॥
ଭୂତ ପ୍ରେତ ସଂସର୍ଗ ଜନିତ ସବ ମେଟି ମଲିନତା ।
ପୁରୋଡାସ ହରି ଅରପି କରି ସବ ବିଧି ପାବନତା ॥
ପୁରୋଡାସ ହବି ହାଥ ଲୈ ଜେୟା ହି ଦକ୍ଷ ଠଢ଼େ ଭୟେ ।
ଧ୍ୟାନ କରତ ଅଖିଲେଶ ହରି ତୈୟା ହୀ ପରଗଟ ହ୍ୱୈ୍ ଗୟେ ॥"

---

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ହାତରେ ଘୃତ ଧରି ପୁରୋହିତଙ୍କ ସହିତ ଯଜମାନ ଦକ୍ଷ ବିଶୁଦ୍ଧ ଅନ୍ତଃକରଣରେ ଧ୍ୟାନ କରନ୍ତେ, ଶ୍ରୀହରି ଯଜ୍ଞସ୍ଥାନରେ ଆବିର୍ଭୂତ ହେଲେ । ଭଗବାନ୍ ବିଷ୍ଣୁ ନିଜ ପ୍ରଭାରେ ଦଶଦିଗକୁ ଦେଦୀପ୍ୟମାନ କରିବାକୁ ଲଗିଲେ । ତାଙ୍କର ପ୍ରକାଶରେ ସଭାରେ ଉପସ୍ଥିତ ସମସ୍ତଙ୍କର ଚକ୍ଷୁ ଝଲସି ଉଠିଲା । ବିଷ୍ଣୁ ଗରୁଡ଼ ଉପରେ ବିରାଜମାନ କରିଥିଲେ । ଗରୁଡ଼ଙ୍କ ପକ୍ଷରୁ ବେଦମନ୍ତ୍ର ନିର୍ଗତ ହେଉଥିଲା ।"

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତ୍ରିମୂର୍ତ୍ତି ଏକାତ୍ମା । ସେମାନଙ୍କ ମଧ୍ୟରେ ଭେଦ ଥିବାର ଯେଉଁ ବ୍ୟକ୍ତି କଳ୍ପନା କରେ ସେ ନରକରେ ପଡ଼େ । ମଣିଷ ବ୍ୟାପାର କରୁଥିବା ସମୟରେ ତାକୁ ବ୍ୟବସାୟୀ କୁହାଯାଏ । ସେହି ବ୍ୟକ୍ତି କୌଣସି ତୀର୍ଥକ୍ଷେତ୍ରକୁ ଯାତ୍ରା କରୁଥିବା ସମୟରେ ତାକୁ ଯାତ୍ରୀ ନାମରେ ଅଭିହିତ କରାଯାଏ । ସେହି ବ୍ୟକ୍ତି ବିବାହ କରିବାକୁ ଗିବା ସମୟରେ ତାକୁ 'ବର' ବୋଲି କୁହାଯାଏ । ସେହିପରି ଯେତେବେଳେ ପର'ବ୍ରହ୍ମ ସୃଷ୍ଟି କରନ୍ତି ତାଙ୍କୁ ବ୍ରହ୍ମା କୁହାଯାଏ । ପାଳନ କରୁଥିବା ସମୟରେ ସେ ବିଷ୍ଣୁ ନାମରେ କଥିତ ହୁଅନ୍ତି ଏବଂ ସେ ଯେତେବେଳେ ସଂହାର କରିବାକୁ ଉଦ୍ୟତ ହୁଅନ୍ତି, ତାଙ୍କୁ ରୁଦ୍ର କୁହାଯାଏ । ଯେଉଁ ବ୍ୟକ୍ତି ସେହି ତିନିଦେବଙ୍କ ମଧ୍ୟରେ ଭେଦଭାବ ଉତ୍ପନ୍ନ କରେ, ଦକ୍ଷପରି ତାକୁ କଠିନ ଦଣ୍ଡ ଭୋଗ କରିବାକୁ ପଡ଼େ ।

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଦକ୍ଷଙ୍କ ଯଜ୍ଞକୁ ଶିବଗଣମାନେ କେବଳ ନଷ୍ଟଭ୍ରଷ୍ଟ କରି ନଥିଲେ । ସେମାନେ ସେଠାରେ ମଳମୂତ୍ର ତ୍ୟାଗକରି ଯଜ୍ଞଟିକୁ ଅପବିତ୍ର କରିଥିଲେ । ତେଣୁ ସର୍ବପ୍ରଥମେ ସେ ସ୍ଥାନଟିକୁ ଶୁଦ୍ଧ କରିବାର ଆବଶ୍ୟକ ଥିଲା । ବ୍ରାହ୍ମଣ-ମାନେ ସେହି ଦୃଷ୍ଟିରୁ ଗୋମୟଦ୍ୱାରା ସ୍ଥାନଟିକୁ ଲିପିପୋଛି ଶୁଦ୍ଧ କରିଦେଲେ । ତା'ପରେ ଉପାଧ୍ୟାୟ, ଋତ୍ୱିକ୍, ହୋତା ଆଦି ମିଳି ଅଗ୍ନି ସଂସ୍ଥାପନ କରି ଯଜ୍ଞ ଆରମ୍ଭ କରିଦେଲେ । ଭୂତ ପ୍ରେତମାନଙ୍କ ସଂସର୍ଗ ଦୋଷ ଦୂର କରିବା ନିମିତ୍ତ ଦକ୍ଷ ସମସ୍ତଙ୍କୁ ପୁରୋଡ଼ାସ ଅର୍ପଣ କରିବା ପରେ, ବିଷ୍ଣୁଙ୍କୁ ଧ୍ୟାନ କରି ଅଗ୍ନିରେ ଘୃତଧାରା ଅର୍ପଣ କଲେ । ସେହି ସମୟରେ ଭଗବାନ୍ ବିଷ୍ଣୁ ସେଠାରେ ଆବିର୍ଭୂତ ହୋଇ ସମସ୍ତଙ୍କୁ ବିମୁଗ୍ଧ କରାଇଲେ ।

ବିଷ୍ଣୁଙ୍କର ତେଜ ଅତ୍ୟନ୍ତ ପ୍ରଭାମୟ ଥିଲା । ସେ ପ୍ରଭା ଥିଲା ଅତ୍ୟନ୍ତ ଦର୍ଶନୀୟ । କେହି ସେ ତେଜ ସହ୍ୟ କରି ପାରିଲେ ନାହିଁ । ବିଷ୍ଣୁଙ୍କର ଆବିର୍ଭାବମାତ୍ରେ ଦଶଦିଗ ପ୍ରଭାମୟ ହୋଇ ଉଠିଲା । ସେଠାରେ ବିଷ୍ଣୁଙ୍କୁ ଦେଖି ସମସ୍ତେ ହତପ୍ରଭ ହୋଇଗଲେ । ସେ ବିନତାନନ୍ଦନ ଗରୁଡ଼ଙ୍କ ପୃଷ୍ଠରେ ବିରାଜମାନ କରିଥିଲେ । ଗରୁଡ଼ ଥିଲେ ଅତ୍ୟନ୍ତ ବଳଶାଳୀ । ସେ ନିଜର ଶକ୍ତିରେ ଦେବରାଜ ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରୁ ଅମୃତ ନେଇ ଆସିଥିଲେ । ସେହି ଗରୁଡ଼ଙ୍କ ପୃଷ୍ଠର ମଣିମୟ ସିଂହାସନ ଉପରେ ପ୍ରଭୁ ବିରାଜମାନ କରିଥିଲେ । ସମସ୍ତଙ୍କ ଚକ୍ଷୁ ସମକ୍ଷରେ ଭଗବାନ୍ ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କ ନିକଟରେ ଗରୁଡ଼ ପୃଷ୍ଠରୁ ଓହ୍ଲାଇ ପଡ଼ିଲେ । ସେ ସମୟରେ ବିଷ୍ଣୁଙ୍କ ଶୋଭା ବର୍ଣ୍ଣନ କରିବା ବିଦ୍ୟାର ଅଧିଷ୍ଠାତ୍ରୀ ସରସ୍ୱତୀ କିମ୍ବା ସହସ୍ର ଜିହ୍ୱା ଶେଷନାଗ ମଧ୍ୟ ସମର୍ଥ ହୋଇ ନଥିଲେ ।

ଭଗବାନ୍‌ଙ୍କ ଶୋଭା ନବନୀରଦ ତଥା ଅତସିକୁସୁମ ପରି ହୋଇଥିଲା । ତାଙ୍କ କଟିରେ ପୀତାମ୍ବର ଶୁଦ୍ଧ ସୁବର୍ଣ୍ଣ ପରି ଶୋଭା ପାଉଥିଲା । ତାଙ୍କ ଶୋଭା ନିରୀକ୍ଷଣ କରି

ମନେ ହେଉଥିଲା—ସତେ ଅବା, ନୀଳବାରଦ ମାଳାରେ ବିଦ୍ୟୁତ୍ ଖେଳା କରୁଛି କି ? ଭଗବାନ୍‌ଙ୍କ କଟିରେ ପୀତବସ୍ତ୍ର ଉପରେ ସ୍ୱର୍ଣ୍ଣ ଚନ୍ଦ୍ରହାର ଲକ୍ଷ୍ମୀଙ୍କ ହସ୍ତ ପରି ଶୋଭା ପାଉଥିଲା । ତାଙ୍କ ଶରୀରର ସ୍ୱର୍ଣ୍ଣରତ୍ନ ଆଭରଣମାନ ଦେଖି ସମସ୍ତେ ଏକଲୟରେ ତାଙ୍କର ଶୋଭାମୟ ଶରୀର ଆଡ଼କୁ ଚାହିଁ ରହିଥିଲେ । ସେହି ବିଶ୍ୱବିମୋହନ ରୂପ ବ୍ରଜବଧୂମାନଙ୍କ ମନରେ କାମ ସନ୍ତାପ ଜାତ କରାଇଥିଲା । ଶରତ୍‌କାଳୀନ ପଦ୍ମ ସଦୃଶ ପ୍ରଭୁଙ୍କ ମୁଖଶୋଭା ପ୍ରତ୍ୟେକଙ୍କ ମନରେ ଶାନ୍ତି ପ୍ରଦାନ କରିଥିଲା ।

ଯଜ୍ଞସ୍ଥଳରେ ଭଗବାନ୍ ବିଷ୍ଣୁ ଅଷ୍ଟଭୁଜରେ ପ୍ରକଟ ହୋଇଥିଲେ । ତାଙ୍କର ଆଠୋଟି ଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ, ବାଣ, ଖଡ୍‌ଗ ଓ ଢାଲ ଶୋଭା ପାଉଥିଲା । ତାଙ୍କ ହୃଦୟରେ ଶ୍ରୀବତ୍ସଲାଞ୍ଛନ, ବନମାଳା ଶୋଭା ପାଉଥିଲା । ବିଷ୍ଣୁଙ୍କ ମୁଖକମଳରେ ପ୍ରଶାନ୍ତିର ହାସ୍ୟରେଖା ଝଲସି ଉଠୁଥିଲା । ଯେଉଁ ହାସ୍ୟରେଖା ଦେଖି ଦେବ, ଗନ୍ଧର୍ବ, ଯକ୍ଷ, ମୁନିଋଷିମାନେ ପ୍ରେମରେ ଗଦ୍ ଗଦ୍ ହୋଇ ଯାଇଥିଲେ ।

ଗରୁଡ଼ ବିଷ୍ଣୁଙ୍କ ଶିର ଉପରେ ଶ୍ୱେତଛତ୍ର ପରି ପକ୍ଷବିସ୍ତାର କରି ରହିଥିଲା । ସେ ଶୋଭା ଦେଖି ମନେ ହେଉଥିଲା—ସତେ ଯେପରି ବିଷ୍ଣୁଙ୍କ ଶିର ଉପରେ ଶରତ୍‌କାଳୀନ ମେଘଖଣ୍ଡ ବିସ୍ତୃତ ହୋଇ ରହିଥିଲା ।

ଭଗବାନ୍ ବିଷ୍ଣୁ ଏତେ ଶୀଘ୍ର ସେଠାରେ ପ୍ରକଟ ହେବେ ବୋଲି କେହି ଧାରଣା କରି ନଥିଲେ । ସେଠାରେ ଉପସ୍ଥିତ ଥିବା ଦେବ ଓ ଋଷିଗଣ ବିଷ୍ଣୁଙ୍କୁ ଦେଖି ସମ୍ଭ୍ରମରେ ସହିତ ସ୍ତୁତି କରିବାକୁ ଚାହୁଁଥିଲେ; ମାତ୍ର ସେମାନେ ଆନନ୍ଦରେ ଏତେ ଗଦ୍ ଗଦ୍ ହୋଇ ପଡ଼ିଲେ ଯେ, କାହାରି କଣ୍ଠରୁ ବାକ୍ୟ ସ୍ଫୁରିଲା ନାହିଁ । ବିଷ୍ଣୁଙ୍କୁ ସ୍ତୁତି କରିବା ସେମାନଙ୍କର ପ୍ରଥମ କର୍ତ୍ତବ୍ୟ ବୋଲି କେହି ଧାରଣା କରି ପାରିଲେ ନାହିଁ ।

କେତେ ସମୟ ପରେ ପ୍ରକୃତିସ୍ଥ ହୋଇ ଦକ୍ଷ ପ୍ରଜାପତି ଆସନରୁ ଉଠି, ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କଲେ । ସେ ପ୍ରଭୁଙ୍କ ପାଦବନ୍ଦନା କରି କହିଲେ—"ହେ ପ୍ରଭୋ, ଆପଣ ଅବିକାରୀ, ମାୟାର ଅତୀତ, ନିରଞ୍ଜନ ଓ ନିରାକାର ଅଟନ୍ତି । ଆପଣ କେବଳ ବ୍ରହ୍ମାଣ୍ଡର ଲୀଳା ବିସ୍ତାର ଲାଗି ସ୍ୱରୂପ ଧାରଣ କରିଅଛନ୍ତି ।"

ଦକ୍ଷଙ୍କୁ ସ୍ତୁତି କରୁଥିବାର ଲକ୍ଷ୍ୟ କରି ଅନ୍ୟାନ୍ୟ ଦେବ ଓ ଋଷିଗଣ ହାତ ଯୋଡ଼ି ବିଷ୍ଣୁଙ୍କୁ ସ୍ତୁତି କରିବା ଆରମ୍ଭ କରିଦେଲେ—"ହେ ପ୍ରଭୁ, ଆପଣ ସାକାର କିମ୍ବା ନିରାକାର, ସେ ଧାରଣା ଆମର ନାହିଁ ।

ଋତ୍ୱିକ୍‌ମାନେ ଦେବଗଣଙ୍କ ସହିତ ମିଶି ଭଗବାନଙ୍କୁ ସ୍ତୁତି କରି କହିଲେ—"ହେ ବିଶ୍ୱପାବନ ପ୍ରଭୋ, ଉପନିଷଦରେ ଆପଣଙ୍କ ତତ୍ତ୍ୱ ବର୍ଣ୍ଣିତ ହୋଇଛି । ଆମେମାନେ ଆପଣଙ୍କ

ସ୍ୱରୂପ ନିର୍ଣ୍ଣୟ କରିବାରେ ଅସମର୍ଥ । ପ୍ରଜାପତିଙ୍କ ଯଜ୍ଞ ଆୟୋଜନରେ ଶିବଙ୍କର ପ୍ରଧାନ ପାର୍ଷଦ ଆମକୁ ଅଭିଶାପ ଦେଇ କହିଛନ୍ତି ଯେ, ଆମେମାନେ କେବଳ କର୍ମକାଣ୍ଡରେ ଧନ୍ଦି ହୋଇ ରହିବୁ । କେଉଁ ମନ୍ତ୍ରର କିଏ ଋଷି, କିଏ ଦେବତା ଏବଂ ଏହାର ବିନିଯୋଗ କିପରି ହେବ, ଆମେମାନେ ସେହି ଗୋଲୋକଧନ୍ଦାରେ ମଗ୍ନ ହୋଇଛୁ । କେଉଁ ମନ୍ତ୍ରର କେଉଁ ଛନ୍ଦ କେତେ ଅକ୍ଷରବିଶିଷ୍ଟ ଏବଂ ଯେଉଁ ଅକ୍ଷର ଦୀର୍ଘ ବା ହ୍ରସ୍ୱ ଉଚ୍ଚାରିତ ହେବ, ଆମେମାନେ ସେଥିପାଇଁ ବ୍ୟସ୍ତ । ଆମେମାନେ ଯଜ୍ଞକୁ ଆପଣଙ୍କ ସ୍ୱରୂପ ବୋଲି ମନେ କରୁଛୁ । ଯଜ୍ଞ ମାଧ୍ୟମରେ ଆପଣଙ୍କ ପୂଜନ କରିବା ଆମର ଧ୍ୟେୟ ହୋଇଛି । ଋକ୍, ଯଜୁଃ, ସାମ ଓ ଅଥର୍ବ ମତରେ ଆମେମାନେ ଆପଣଙ୍କୁ ଯଜ୍ଞସ୍ୱରୂପୀ ବୋଲି ଜ୍ଞାନ କରିଛୁ । ହେ ଯଜ୍ଞସ୍ୱରୂପୀ, ଆପଣଙ୍କୁ ପ୍ରଣାମ ।''

ଅନ୍ୟମାନେ ମଧ୍ୟ ଋତ୍ୱିକ୍‌ମାନଙ୍କ ସହିତ ମିଳିତ ହୋଇ ସମସ୍ୱରରେ ଜଗତ୍‌ପାବନ ବିଷ୍ଣୁଙ୍କୁ ଉଚ୍ଚସ୍ୱରରେ ସ୍ତୁତି କରିବାକୁ ଲାଗିଲେ—''ହେ ପ୍ରଭୋ, ଏ'ସଂସାର ହେଉଛି—ଗୋଟିଏ ଗହନ ଅରଣ୍ୟ । ଯେପରି ଅଗମ୍ୟ ମାର୍ଗରେ ଚାଲିଲେ ଅତ୍ୟନ୍ତ କଷ୍ଟ ହୁଏ; ଠିକ୍ ସେହିପରି ଏହି ସଂସାରରୂପୀ ଗହନ ମାର୍ଗରେ ଆମେମାନେ ଧନ୍ଦି ହେଉଛୁ । ସେହି ଗହନ-ମାର୍ଗରେ ବାସନାରୂପୀ ବିଷଧର ସର୍ପମାନେ ଫଣା ଉଠାଇ ଫୁଁ ଫୁଁକାର କରୁଛନ୍ତି । ସେମାନେ ଟିକିଏ ମାତ୍ର ଅବସର ପାଇଲେ ଦଂଶନ କରିଦେବେ । ଏହି ସଂସାରର ଗହନ ମାର୍ଗରେ ସୁଖ ଦୁଃଖ, ରାଗଦ୍ୱେଷ, ହର୍ଷଶୋକ, ହାନିଲାଭ, ଯଶ, ଅପଯଶ ଆଦି ଅସଂଖ୍ୟ ଗଭୀର ଗର୍ତ୍ତ ରହିଛି । ତା' ବ୍ୟତୀତ ଅକାରଣରେ ନିନ୍ଦା ଓ ଦ୍ୱେଷକାରୀ, ଈର୍ଷାପରାୟଣ ଭଳି ଅନେକ ହିଂସ୍ରଜନ୍ତୁ ରହିଛନ୍ତି । ସେହି ସଂସାରରୂପୀ ଗହନବନରେ ଶୋକରୂପକ ଦାବାଗ୍ନି ପ୍ରଜ୍ୱଳିତ ହେଉଛି । ନିତ୍ୟ ନୂତନ କ୍ଲେଶ, ସନ୍ତାପ ଓ ପୀଡ଼ା ହୃଦୟକୁ ଦଗ୍ଧ କରୁଛି ।''

''ହେ ସ୍ୱାମିନ୍, ଜୀବମାତ୍ରର ଗନ୍ତବ୍ୟ ସ୍ଥାନ ହେଉଛି—ଆପଣଙ୍କର ଚରଣାରବିନ୍ଦ । କାମନାରେ ବଶୀଭୂତ ଏ ଜୀବ, ମୃଗତୃଷ୍ଣା ପଛରେ ମୃଗ ଧାଇଁଲା ପରି ଅହରହ ଧାଇଁବାରେ ଲାଗିଛି । ମମତା, ଆବେଗ ଓ ତୃଷ୍ଣାରେ ବଶୀଭୂତ ହୋଇ ସେ ଆପଣଙ୍କ ପାଦପଦ୍ମ ପ୍ରତି ଉନ୍ମୁଖ ହେଉନାହିଁ । ହେ ପ୍ରଭୋ, ସେମାନେ ସତେ କଅଣ କେବେହେଲେ ଆପଣଙ୍କ ପାଦପଦ୍ମରେ ଆଶ୍ରୟ ଗ୍ରହଣ କରିବେ ?''

ଅନ୍ୟମାନଙ୍କ ସ୍ତୁତି ଶୁଣି ରୁଦ୍ର କହିଲେ—''ହେ ମହାତ୍ମନ୍, ଆପଣ ସମସ୍ତ ବରଦାତାଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ମୁଁ ସବୁ କିଛି ତ୍ୟାଗ କରି ଆପଣଙ୍କ ଚରଣାରବିନ୍ଦକୁ ଆଶ୍ରୟ କରି ସର୍ବଦା ଧ୍ୟାନ ମଗ୍ନ ହୋଇଛି । ଆଚାରଭ୍ରଷ୍ଟ ଅଜ୍ଞାନ ବ୍ୟକ୍ତିମାନେ ମୋତେ ଅଘୋର, ଅଶୁଚି-ସମ୍ପନ୍ନ ବୋଲି କହୁଛନ୍ତି । ଯେଉଁମାନେ ଏପରି କହୁଛନ୍ତି ସେମାନେ

କହୁଥା'ନ୍ତି । ମୁଁ ଆପଣଙ୍କ ଚରଣାରବିନ୍ଦରୁ ମଧୁପାନ କରିବାର ସ୍ୱାଦ ପାଇ ସାରିଛି । ମୁଁ କାହାର ବାକ୍ୟବାଣ ପ୍ରତି କେବେହେଲେ ଦୃଷ୍ଟି ଦେଉନାହିଁ । ମୁଁ ମୋ' କାର୍ଯ୍ୟରେ ସର୍ବଦା ତଲ୍ଲୀନ ରହିଛି ।"

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଶିବଙ୍କର ସାର୍ଥକ ସ୍ତୁତି ଶୁଣି, ଅନ୍ୟମାନେ ଭଗବାନ୍ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ କିଛି କହିବାଲାଗି ସାହସ କଲେ । ଏହାପରେ ବ୍ରହ୍ମା ଓ ଭୃଗୁମହର୍ଷି ମଧ୍ୟ ପରମେଶ୍ୱରଙ୍କୁ ସ୍ତୁତି କରିବା ଲାଗି ଉଠି ଛିଡ଼ା ହେଲେ ।

## ଛପ୍‌ପୟ

"ନିରଖି ଭୟେ ସବ ମଗ୍ନ ଉଠେ ଶିବ ସୁରନ ସହିତ ବିଧି ।
ନବଜଲଧର ସମ ବରନ ହରନ ଦୁଖ ଦୁରିତ ଦୟାନିଧି ।।
କିରୀଟ ମୁକୁଟ ଅତି ସୁଧର ପୀତବର ବସନ ବିରାଜେଂ ।
ଶ୍ୱେତ ଛତ୍ର ଅରୁ ଚଓଁର ଗଲେ ବନମାଲ ଭ୍ରାଜେ ।।
ଶଙ୍ଖ ଚକ୍ର ଅସି ଗଦା ଶର ଡାଲ ପଦ୍ମ ସାରଙ୍ଗ ଧନୁ ।
ଅଷ୍ଟ ବାହୁ ଆୟୁଧ ଲସୈଂ ଗିରି ଫୁଲୀ କନେର ଜନୁ ।।"



## ବିଷ୍ଣୁ ସ୍ତୁତି

"ସ ପ୍ରସୀଦ ତ୍ୱମସ୍ମାକମାକାଙ୍‌କ୍ଷଂ ତାଂ
ଦର୍ଶନଂ ତେ ପରିଭ୍ରଷ୍ଟସତ୍‌କର୍ମଣାମ୍ ।
କୀର୍ତ୍ତ୍ୟମାନେ ନୃଭିର୍ନାମ୍ନି ଯଜ୍ଞେଶ ତେ
ଯଜ୍ଞବିଘ୍ନାଃ କ୍ଷୟଂ ଯାନ୍ତି ତସ୍ମୈ ନମଃ ॥"

(ଭାଗବତ ୪।୭।୪୭)

ଛପ୍‌ପୟ

"ଇସ୍ତୁତି ପ୍ରଭୁକୀ କରେଂ ଦକ୍ଷ ଋତ୍ୱିକ୍ ବିଦ୍ୟାଧର ।
ଲୋକପାଲ, ସୁର, ଇନ୍ଦ୍ର, ସିଦ୍ଧ, ଋଷି, ମୁନି, ଯୋଗେଶ୍ୱର ॥
ଯଜମାନୀ ଅରୁ ଅଗ୍ନି, ଯକ୍ଷ, ଗନ୍ଧର୍ବ, ବିପ୍ରଗନ ।
ବିବିଧଭାଁତି କରି ବିନୟ ଲଗାୟୌ ହରିଚରନନି ମନ ॥
ସବ କୀ ସୁନ୍ଦର ସୁନି ବିନୟ ଅତି ପ୍ରସନ୍ନ ଶ୍ରୀହରି ଭୟେ ।
ଜୈସୀ ଜାକୀ କାମନା, ତୈ ସେ ତାକୁଁ ବର ଦୟେ ॥"

---

ଅର୍ଥାତ୍—ମୈତ୍ରେୟ କହୁଛନ୍ତି—"ହେ ବିଦୁର, ସମସ୍ତଙ୍କ ସ୍ତୁତି ପରେ, ବ୍ରାହ୍ମଣମାନେ ସାରଭୂତ ସ୍ତୁତି ଆରମ୍ଭ କରି କହିଲେ—ହେ ଯଜ୍ଞର ଅଧିପତି ! ମଣିଷମାନେ ଆପଣଙ୍କୁ ସ୍ତୁତି କରି ଯଜ୍ଞର ବିଘ୍ନ ନାଶ କରନ୍ତି । ଆମର ଏହି ଯଜ୍ଞ ନଷ୍ଟ ହୋଇ ଯାଇଥିଲି । ଏଇଥିପାଇଁ

ଆମେମାନେ ଆପଣଙ୍କ ଦର୍ଶନ ଲାଗି ଲାଳାୟିତ ହୋଇଥିଲୁ । ଆପଣ ଆମକୁ ଦର୍ଶନ ଦେଇଛନ୍ତି । ଆପଣ ଆମ ପ୍ରତି ପ୍ରସନ୍ନ ହୁଅନ୍ତୁ ! ଆପଣଙ୍କ ଚରଣରେ ପୁନଃ ପୁନଃ ପ୍ରଣାମ !!!"

ଯେଉଁମାନେ ଭଗବାନଙ୍କ ସାକ୍ଷାତ୍ ପାଇଛନ୍ତି, ସେମାନଙ୍କ ଜୀବନ ଧନ୍ୟ । ଯେଉଁ ନେତ୍ର ଶ୍ୟାମସୁନ୍ଦରଙ୍କ ପ୍ରତ୍ୟକ୍ଷ ଦର୍ଶନ କରିଛି, ସେ ନେତ୍ର ଧନ୍ୟ ଯେଉଁ ବାଣୀରେ ବିରୁଦାବଳୀ ଗାନ କରାଯାଇଛି, ସେ ବାଣୀ ମଧ୍ୟ ଶ୍ରେଷ୍ଠ । ଯେଉଁ ଇନ୍ଦ୍ରିୟ ଭଗବାନଙ୍କ ସେବାରେ ଲାଗିଛି ସେ ଇନ୍ଦ୍ରିୟ ମଧ୍ୟ ଧନ୍ୟ । ବିଷ୍ଣୁଙ୍କ ପ୍ରୀତି ନିମିତ୍ତ ଯାହା କିଛି କରାଯାଇଛି, ସେହି ସମସ୍ତ କାର୍ଯ୍ୟ ଜଗତରେ ଶ୍ରେଷ୍ଠ ।

ମୈତ୍ରେୟ କହୁଛନ୍ତି—"ହେ ବିଦୁର, ଭଗବାନ୍ ବିଷ୍ଣୁ ଦକ୍ଷଯଜ୍ଞ ସ୍ଥଳରେ ଆବିର୍ଭାବ ହେବାମାତ୍ରେ ସମସ୍ତେ ନିଜ ନିଜର ବୁଦ୍ଧି ଅନୁସାରେ ସ୍ତୁତି କରିବାକୁ ଲାଗିଲେ । ଦକ୍ଷ, ଋତ୍ୱିକ ଓ ଇନ୍ଦ୍ରାଦି ଦେବଗଣ ବିଷ୍ଣୁଙ୍କୁ ସ୍ତୁତି କରି ସାରିବା ପରେ, ଭୃଗୁ ଉଠି ଛିଡ଼ା ହୋଇ ପଡ଼ିଲେ । ସେ ହାତ ଯୋଡ଼ି କହିଲେ—"ହେ ଭଗବନ୍, ମୁଁ ଆପଣଙ୍କ ଶ୍ରୀଚରଣ ଯୁଗଳରେ ପ୍ରଣାମ କରୁଛି । ମୁଁ ଆପଣଙ୍କର ଶରଣ ପଶୁଛି, ଆପଣ ମୋତେ ରକ୍ଷାକରନ୍ତୁ । ଆପଣଙ୍କ ମାୟା ଅତ୍ୟନ୍ତ ଗହନ । ସେଥିରେ ଛନ୍ଦି ହୋଇ ସମସ୍ତେ ନିଜ ନିଜର ଆତ୍ମଜ୍ଞାନକୁ ଭୁଲି ଯାଇଛନ୍ତି ।"

ଏହା ଶୁଣି ବ୍ରହ୍ମା ମନେ ମନେ ବିରକ୍ତ ହୋଇ ଭାବିଲେ—'ଭୃଗୁ ମୋର ପୁତ୍ର ହୋଇ କହୁଛି ଯେ, ମୁଁ ବିଷ୍ଣୁଙ୍କ ସମ୍ବନ୍ଧରେ କିଛି ଜାଣେନାହିଁ ।' ସେ ପ୍ରକାଶ୍ୟରେ କହିଲେ—"ହେ ଭଗବାନ୍, ମୁଁ ଆପଣଙ୍କ ତତ୍ତ୍ୱକୁ ବେଶ୍ ଭଲ ଭାବରେ ଜାଣେ । ଇନ୍ଦ୍ରିୟ ଦ୍ୱାରା ଯାହା କିଛି ଅନୁଭୂତ ହୁଏ, ତାହା ସବୁ କିଛି ମାୟାର ଖେଳ; କିନ୍ତୁ ଆପଣ ମାୟାରହିତ ।"

ଏହାପରେ ଇନ୍ଦ୍ର କହିଲେ—"ହେ ପ୍ରଭୁ, ଆଜି ଆମେମାନେ ଆପଣଙ୍କର ଅଷ୍ଟଭୁଜ ବିଶିଷ୍ଟ ମୂର୍ତ୍ତି ଅବଲୋକନ କରି ଧନ୍ୟ ହୋଇଛୁ । ଏହି ମୂର୍ତ୍ତି ଆମର ସର୍ବସ୍ୱ । ଆଜି ଆମର ନେତ୍ର ସଫଳ ହୋଇଛି । ଏହା ବ୍ୟତୀତ ଆପଣଙ୍କ ସ୍ୱରୂପ ସମ୍ବନ୍ଧରେ ଯଦି କାହାର ପୃଥକ୍ ଚିନ୍ତା ରହିଛି, ସେଥିରେ ଆମର ଆପତ୍ତି ନାହିଁ ।"

ସମସ୍ତଙ୍କର ତତ୍ତ୍ୱଜ୍ଞାନମୂଳକ ବାଣୀ ଶୁଣି ଦକ୍ଷ ପତ୍ନୀମାନେ ହାତଯୋଡ଼ି ବିନୀତ ଭାବରେ କହିଲେ—"ହେ ପରମେଶ୍ୱର, ଆପଣଙ୍କ ଯଥାର୍ଥ ସ୍ୱରୂପ ଆଜି ପର୍ଯ୍ୟନ୍ତ କେହି ଭଲ ଭାବରେ ପ୍ରତ୍ୟକ୍ଷ କରି ନାହାନ୍ତି କିମ୍ବା ଭବିଷ୍ୟତରେ ମଧ୍ୟ କରି ପାରିବେ ନାହିଁ । ଶ୍ରୁତି ମଧ୍ୟ ଏ ସମ୍ବନ୍ଧରେ 'ନେତି ନେତି' କହି ନୀରବ ହୋଇଛି । ପ୍ରଜାପତି ମହୋଦୟ ଆପଣଙ୍କ ପୁଜନ

ଲାଗି ଏହି ଯଜ୍ଞାନୁଷ୍ଠାନ ଆରମ୍ଭ କରିଥିଲେ; କିନ୍ତୁ ରୁଦ୍ରଗଣମାନେ ତାହାକୁ ଧ୍ୱଂସ କରି ଦେଇଛନ୍ତି । ଆପଣ ବର୍ତ୍ତମାନ ଅମୃତ ଦୃଷ୍ଟିରେ ଅବଲୋକନ କରି ସେହି ଯଜ୍ଞକୁ ପୁନର୍ଜୀବିତ କରି ଦିଅନ୍ତୁ !"

ଋଷିମାନେ ଦକ୍ଷ ପତ୍ନୀମାନଙ୍କ ସହିତ ଏକମତ ହୋଇ କହିଲେ—"ପ୍ରଭୋ, ଆପଣଙ୍କ ପକ୍ଷରେ ଏହା ଅତି ସାମାନ୍ୟ କାର୍ଯ୍ୟ । ଯେଉଁ ଲକ୍ଷ୍ମୀଙ୍କୁ ପାଇବା ପାଇଁ ଜଗତର ଶ୍ରେଷ୍ଠ ପ୍ରାଣୀମାନେ ଅତ୍ୟନ୍ତ ଲାଳାୟିତ, ସେହି ମହାଲକ୍ଷ୍ମୀ ଆପଣଙ୍କ ଶ୍ରୀଚରଣରେ ସେବିକା । ଆପଣଙ୍କ ଦୃଷ୍ଟିରେ ଅଷ୍ଟସିଦ୍ଧି ଓ ନବନିଧି ପୂରି ରହିଛି ।"

ଏହି ସମୟରେ ସିଦ୍ଧମାନେ କହିଲେ—"ପ୍ରଭୋ, ଆମେମାନେ ଆପଣଙ୍କ ସ୍ୱରୂପ ଧ୍ୟାନରେ ମଗ୍ନ ହେବାକୁ ଚାହୁଁ । ଆମକୁ ସେହି ଧ୍ୟାନରେ ବ୍ରହ୍ମାନନ୍ଦ ସୁଖ ମିଳିପାରିବ !"

ତା'ପରେ ଦକ୍ଷଙ୍କର ପାଟରାଣୀ ପ୍ରସୂତି ଦେବୀ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଭଗବାନଙ୍କୁ ସ୍ତୁତି କରି କହିଲେ—"ପ୍ରଭୋ, ଆପଣ ଏଠାକୁ ଆସି ନଥିବାରୁ, ସବୁ କିଛି ଅନିଷ୍ଟ ଘଟିଲା । ଆପଣ ପ୍ରଥମରୁ ଆସିଥିଲେ, ଯଜ୍ଞ ବିଧ୍ୱଂସ ହୋଇ ନଥାନ୍ତା କିମ୍ବା ମୋର ସ୍ନେହମୟୀ ପୁତ୍ରୀ ଆତ୍ମହତ୍ୟା କରି ନ ଥାନ୍ତା ! ଯାହା ହେବାର କଥା ତାହା ହୋଇଯାଇଛି । ଆପଣ କୃପାକରି ଏଠାକୁ ଆସିଛନ୍ତି, ଏହାହିଁ ଆମର ଅହୋଭାଗ୍ୟ । ଆପଣ ନିଜ ପ୍ରାଣପ୍ରିୟା ଲକ୍ଷ୍ମୀଙ୍କ ସହିତ ଆମକୁ ରକ୍ଷା କରନ୍ତୁ । ସମସ୍ତ ଶରୀରର ସୌନ୍ଦର୍ଯ୍ୟ ଯେପରି ମସ୍ତକ ଉପରେ ନ୍ୟସ୍ତ ଥାଏ, ଠିକ୍ ସେହିପରି ଏହି ଯଜ୍ଞର ଶୋଭା ହେଉଛନ୍ତି—ଆପଣ ।"

ସମସ୍ତଙ୍କ ସ୍ତୁତି ଶୁଣି ଭୃଗୁ ମନେ ମନେ କହିଲେ—"ଏମାନେ କେହି ଭଗବାନଙ୍କ ତତ୍ତ୍ୱ ଜାଣନ୍ତିନାହିଁ । କେଣ୍ଟ ଯାହା ମନକୁ ଯାହା ଆସୁଛି, ସେ ସେହି ଅନୁସାରେ ସ୍ତୁତି କରିବାରେ ଲାଗିଛି । ଏହି ସମୟରେ ଲୋକପାଳମାନେ କହିଲେ—"ଆମେମାନେ ଆପଣଙ୍କ ଶୁଦ୍ଧ ସ୍ୱରୂପ ସମ୍ବନ୍ଧରେ ଜାଣିବାରେ ଅସମର୍ଥ ହୋଇଛୁ । ଆପଣ ଇନ୍ଦ୍ରିୟାତୀତ । ଆପଣ ପଞ୍ଚଭୂତରୁ ପୃଥକ୍ କୌଣସି ଜୀବ ମଧ୍ୟ ନୁହନ୍ତି ।"

ସମସ୍ତଙ୍କ ମନର ପୃଥକ୍ ପୃଥକ୍ ଭାବ ଜାଣି ଯୋଗେଶ୍ୱର କହିଲେ—"ହେ ବିଶ୍ୱେଶ୍ୱର, ଆପଣ ଆତ୍ମା ରୂପରେ ସମସ୍ତଙ୍କ ହୃଦୟରେ ବିରାଜମାନ କରି ଅଛନ୍ତି । ଯେଉଁ ବ୍ୟକ୍ତି ପୃଥକ୍ ଭାବରେ ନିଜର ଆତ୍ମାରେ ଆପଣଙ୍କୁ ପ୍ରତ୍ୟକ୍ଷ କରେ, ଆପଣ ତାହା ପ୍ରତି ପ୍ରସନ୍ନ ହୁଅନ୍ତି । ଆମେମାନେ ଅନନ୍ୟ ଭାବରେ ଆପଣଙ୍କୁ ଭକ୍ତି କରୁଛୁ । ହେ ଭଗବନ୍, ଆମ ମନରୁ ଆପଣ ଭୟ ଦୂର କରି ଦିଅନ୍ତୁ । ଆପଣ ବିଭିନ୍ନ ରୂପ ଧାରଣ କରୁଥିଲେହେଁ ମାୟିକ ଗୁଣରୁ ଆପଣ ସମ୍ପୂର୍ଣ୍ଣ ପୃଥକ୍ । ଆପଣ ଯାହା କିଛି ହୁଅନ୍ତୁ ନା କାହିଁକି, ଆମେମାନେ ଆପଣଙ୍କ ଚରଣାରବିନ୍ଦରେ ପ୍ରଣାମ କରୁଛୁ ।"

ବେଦମାନେ କହିଲେ—"ପ୍ରଭୋ, ଆପଣଙ୍କର ଯଥାର୍ଥ ରୂପ ନିର୍ଣ୍ଣୀତ ହୋଇନାହିଁ । ତେଣୁ ଆପଣ ଯାହା ହୁଅନ୍ତୁ ନା କାହିଁକି, ଆମେ ଆପଣଙ୍କୁ ପ୍ରଣାମ କରୁଛୁ ।"

ଅଗ୍ନି ହାତ ଯୋଡ଼ି କହିଲେ—"ଆପଣ ଯଜ୍ଞର ରକ୍ଷାକାରୀ । ତେଣୁ ଆପଣ ଯଜ୍ଞସ୍ୱରୂପୀ । ତେଣୁ ହେ ଯଜ୍ଞସ୍ୱରୂପୀ, ମୁଁ ଆପଣଙ୍କୁ ପ୍ରଣାମ କରୁଛି ।"

ଦେବଗଣ ସର୍ବଦା ଭୀତତ୍ରସ୍ତ ଅବସ୍ଥାରେ ରହିଥାନ୍ତି । କାରଣ, ସେମାନଙ୍କ ଭୟ; କାଳେ କେହି ତାଙ୍କୁ ନନ୍ଦନକାନନର ଅଧିକାରରୁ ବଞ୍ଚିତ କରିଦେବ ! ସେମାନେ ବିଷ୍ଣୁଙ୍କୁ ପ୍ରଣାମ ଜଣାଇ କହିଲେ—"ଭଗବନ୍, ଆପଣ ସର୍ବଦା ସମସ୍ତଙ୍କ ରକ୍ଷାକରନ୍ତି । ପ୍ରଳୟ କାଳରେ ଜଗତକୁ ଉଦରରେ ରଖି ଯୋଗନିଦ୍ରାରେ ଶୋଇ ପଡ଼ନ୍ତି; କିନ୍ତୁ ଯୋଗିଜନମାନେ ଆପଣଙ୍କୁ ହୃଦୟରେ ଧାରଣ କରି ଅଛନ୍ତି । ତେଣୁ ଆମେମାନେ ଆପଣଙ୍କୁ ପ୍ରଣାମ କରୁଛୁ ।"

ଗନ୍ଧର୍ବମାନେ ସ୍ତୁତି କରି କହିଲେ—"ହେ ମହାପ୍ରଭୁ, ଏହି ମୁନିଋଷିଗଣ ଆପଣଙ୍କର ଅଂଶଭୂତ । ଯାଦୁକରର ପେଡ଼ି ପରି ଆପଣ ଏହି ଜଗତଟିକୁ ନାନା ଭାବରେ ସଜାଇ, ତହିଁରେ କ୍ରୀଡ଼ା କରୁଛନ୍ତି । ଏଣୁ ହେ କ୍ରୀଡ଼ାପ୍ରିୟ, କୌତୁକୀ କେଶବ, ଆପଣଙ୍କୁ ବାରମ୍ବାର ପ୍ରଣାମ ।"

ଏହାପରେ ବିଦ୍ୟାଧରଗଣ ପରମେଶ୍ୱରଙ୍କ ପ୍ରଶାନ୍ତ ସ୍ୱରୂପରେ ଗଦ୍‌ଗଦ୍ ହୋଇ କହିଲେ—"ହେ ଚରାଚର ସ୍ୱାମୀ, ଆପଣ ଆମମାନଙ୍କୁ କେଡ଼େ ସୁନ୍ଦର ଶରୀର ପ୍ରଦାନ କରି ଅଛନ୍ତି । ଏହି ସୁନ୍ଦର ଶରୀର ଲାଭ କରି ଆମେମାନେ ତା'ର ମହତ୍ତ୍ୱ ଉପଲବ୍ଧି କରିପାରୁ ନାହୁଁ । ମାୟାର ଭ୍ରମଜାଲରେ ପଡ଼ି ଆମେମାନେ 'ଏ' ମୋର, ସେ ତୋର' ଏହି ଭାବରେ କାଳ ଅତିକ୍ରମ କରି ଚାଲିଛୁ । ଆପଣଙ୍କର ତ୍ରୈଲୋକ୍ୟପାବନ କଥା ଶ୍ରବଣରେ କେବେହେଲେ ମନ ଦେଇନାହୁଁ । ଯେଉଁମାନେ ଆପଣଙ୍କର ଅମୃତମୟ ଚରିତ ଶ୍ରବଣ କରିଛନ୍ତି, ସେମାନେ ମାୟାମୋହରୁ ନିଜକୁ ମୁକ୍ତ କରି ପାରିଛନ୍ତି । ସେଇ ସୁଲଳିତ ମନୋମୁଗ୍ଧକର କଥାର ଆଧାରଭୂତ ଆପଣଙ୍କୁ ଆମେମାନେ ପ୍ରଣାମ କରୁଛୁ ।"

ସମସ୍ତଙ୍କ ସ୍ତୁତି ଶେଷ ହେବା ପରେ, ବ୍ରାହ୍ମଣମାନେ ହାତଯୋଡ଼ି ବିନୀତ ଭାବରେ କହିଲେ—"ହେ ଭଗବନ୍, ଆପଣ ଯଜ୍ଞର ନିୟାମକ । ଯଜ୍ଞରେ ବ୍ୟବହୃତ ଘୃତ, ଅଗ୍ନି, ମନ୍ତ୍ର, ସମିଧ, କୁଶ, ଋତ୍ୱିକ୍, ଅଗ୍ନିହୋତ୍ର, ସ୍ୱାହା, ସ୍ୱଧା, ସୋମ, ବଳିପଶୁ ତଥା ଯଜମାନ ଓ ତାହାର ପତ୍ନୀ; ସବୁ କିଛି ଆପଣ । ମହାପ୍ରଳୟ ପରେ ରସାତଳଗାମୀ ପୃଥିବୀଙ୍କୁ ଆପଣ ଶୂକର ରୂପ ଧାରଣ କରି ଉଦ୍ଧାର କରିଥିଲେ । ତେଣୁ ଆମେମାନେ ଭାବୁଛୁ, ଆପଙ୍କର ସୁମଧୁର ନାମ ଭବସାଗରର ନୌକା ଅଟେ । ଯଜ୍ଞରେ ଯାହା କିଛି ତ୍ରୁଟି ବିଚ୍ୟୁତି

ରହିଥାଏ, ତାହା ଆପଣଙ୍କ ନାମ କୀର୍ତ୍ତନରେ ଦୂରୀଭୂତ ହୋଇଥାଏ । ଆମର ଏହି ଯଜ୍ଞରେ ଆପଣ ସ୍ୱୟଂ ଆବିର୍ଭୂତ ହୋଇ ଆମ ମନରୁ ଭୟଭ୍ରାନ୍ତି ଦୂର କରିଦିଅନ୍ତୁ । ଏଥର ଯଜ୍ଞରେ ଆଉ କୌଣସି ବାଧାବିଘ୍ନ ଉପସ୍ଥିତ ହେବନାହିଁ । ଏଣିକ ନିର୍ବିଘ୍ନରେ ଆମର ଏହି ଯଜ୍ଞ ପୂର୍ଣ୍ଣ ହେବ ।''

ମୈତ୍ରେୟ କହିଲେ—''ହେ ବିଦୁର, ଦକ୍ଷଯଜ୍ଞରେ ଉପସ୍ଥିତ ସମସ୍ତେ ନିଜ ନିଜର ବୁଦ୍ଧି ଅନୁସାରେ ପରମେଶ୍ୱରଙ୍କ ସ୍ତୁତି କରନ୍ତେ, ସଚ୍ଚିଦାନନ୍ଦ ବିଷ୍ଣୁ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଦକ୍ଷ ଅତି ଆଦର ତଥା ଯତ୍ନରେ ବିଧିବିଧାନପୂର୍ବକ ତାଙ୍କୁ ପୂଜା କଲେ । ପୂଜା ଶେଷରେ ତାଙ୍କର ଯଜ୍ଞ ଭାଗ ତଥା ପୁରୋଡ଼ାସ (ପିଠା) ତାଙ୍କୁ ଅର୍ପଣ କଲେ । ଭକ୍ତିଭାବ ତଥା ଶାସ୍ତ୍ରୀୟ ରୀତିରେ ଦକ୍ଷଙ୍କ ପୂଜା ତଥା ସମର୍ପଣରେ ପରମେଶ୍ୱର ବିଷ୍ଣୁ ସନ୍ତୁଷ୍ଟ ହୋଇ ବ୍ରହ୍ମା, ରୁଦ୍ରଙ୍କ-ଠାରୁ ସେ ଆଦୌ ପୃଥକ୍ ନୁହନ୍ତି ବୋଲି ମେଘମନ୍ଦ୍ର ସ୍ୱରରେ ଘୋଷଣା କଲେ । ହେ ବିଦୁର, ପ୍ରଭୁ ପରମେଶ୍ୱରଙ୍କଠାରୁ ଉପଦେଶ ଶୁଣିବାଲାଗି ସମସ୍ତେ ଅତ୍ୟନ୍ତ ଆଗ୍ରହର ସହିତ ଅପେକ୍ଷା କରିଥିଲେ । ତେଣୁ ଭଗବାନ୍‌ଙ୍କ ଶ୍ରୀମୁଖରୁ ନିସୃତ ବାଣୀ ଶୁଣି ସମସ୍ତେ ଉତ୍କର୍ଣ୍ଣ ହୋଇ ବଚନାମୃତ ପାନ କଲେ ।''

## ଛପ୍‌ପୟ

''ବିପ୍ର କହେଂ ହେ ବିଭୋ, ଆପଇ ଯଜ୍ଞ ସୋମ ଘୃତ ।
ମନ୍ତ୍ର ଅଗ୍ନି କୁଶ ସମିଧ ଦେବ ! ତୁମ ବଲ ପଶୁ ଅରୁବ୍ରତ ॥
ପୁରୋଡ଼ାସ ଯଜମାନ ଆପଇ ହବିକୁଁ ପାଓେଂ ।
ନାମ କୀରତନ କର ତ ଯଜ୍ଞ ତ୍ରୁଟି ସବ ନସି ଜାଓେଂ ॥
ପାଓେଂ ପ୍ରେମ ପୀୟୂଷ ପ୍ରଭୁ, ପୁନ ପୁନ ପେରନ ମହଁ ପରହିଁ ।
ଶିବଗଣ କୃତ ବିଧ୍ୱଂସ ମଖ, ତା ହିଁ ବିଭୋ ! ପୂରନ କରହିଁ ॥''



## ଦକ୍ଷଯଜ୍ଞର ପୂର୍ଣ୍ଣାହୁତି

"ରୁଦ୍ରଂ ଚ ସ୍ୱେନ ଭାଗେନ ହ୍ୟୁପାଧାବତ୍ ସମାହିତଃ ।
କର୍ମଣୋଦବସାନେନ ସୋମପାନିତରାନପି ॥
ଉଦବସ୍ୟ ସହର୍ତ୍ୱିଗ୍‌ଭିଃ ସସ୍ନାବବଭୃଥଂ ତତଃ ।
ତସ୍ମାଅପ୍ୟନୁଭାବେନ ସ୍ୱେ ନୈବାବାପ୍ତରାଧସେ ॥
ଧର୍ମ ଏବ ମତଂ ଦତ୍ତ୍ୱା ତ୍ରିଦଶାସ୍ତେ ଦିବଂ ଯଯୁଃ ॥"

(ଭାଗବତ ୪।୭।୫୬।୫୭)

ଛପ୍‌ପଯ୍

"ବିଷ୍ଣୁ ଭୟେ ସବ ନ କୁଁ ଶିକ୍ଷା ଦୀହ୍ନୀଂ ।
ହୈଂ ବିଧି ଶିବ ସବ ଏକ ଭେଦ କୀ ବ୍ୟାଖ୍ୟା କୀହ୍ନୀଂ ॥
ସବହି ହର୍ଷିତ ଭୟେ କରେ୍ୟା ଆରମ୍ଭ ଯଜ୍ଞ ଫିର ।
ରହ୍ୟୋଂ ନ ହୋହି ମଖ ପୂର୍ଣ୍ଣ ଜହାଁ ତୀନୋଂ ବିଧି ହରି ହର ॥
ଅତି ପ୍ରସନ୍ନ ହୈ ପ୍ରଜାପତି, ଶିବ ଜୀକୋ ପୂଜନ କରେ୍ୟା ।
ସତୀ ଯାଦ କରି ଦକ୍ଷ କେ, ନେହ ନୀର ନୟନନି ଭରେ୍ୟା ॥"

---

ଅର୍ଥ ତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଦକ୍ଷଯଜ୍ଞ ସମାପ୍ତ ହେଲା । ଯଜମାନ ଦକ୍ଷ ଏକାଗ୍ର-ଚିତ୍ତରେ ଭଗବାନ୍ ବୃଷଭଧ୍ୱଜଙ୍କୁ ତାଙ୍କର ଯଜ୍ଞଭାଗ ଅର୍ପଣ କରିବା ସଙ୍ଗେ ସଙ୍ଗେ 'ଉଦବସାନ' ନାମକ କର୍ମଦ୍ୱାରା ସୋମପାନକାରୀ ଅନ୍ୟାନ୍ୟ ଦେବତାମାନଙ୍କୁ ଯଥାବିଧି ପୂଜନ କଲେ । ତାହାପରେ ଦକ୍ଷ ଋତ୍ୱିକମାନଙ୍କ ସହିତ 'ଅବଭୃଥ' ସ୍ନାନ କଲେ । ତଦନନ୍ତର ଦକ୍ଷଙ୍କୁ ଦେବତାମାନେ ଅଭିପ୍ସିତ ବରଦାନ ଦେଇ ନିଜ ନିଜ ସ୍ଥାନ ସ୍ୱର୍ଗପୁରକୁ ବିଜୟ କଲେ ।"

ଶରୀରଟି ତିନିଭାଗରେ ବିଭକ୍ତ । ପାଦରୁ ନାଭି ପର୍ଯ୍ୟନ୍ତ ଗୋଟିଏ ଭାଗ, ନାଭିରୁ ଗ୍ରୀବା ପର୍ଯ୍ୟନ୍ତ ଦ୍ୱିତୀୟ ଭାଗ ଏବଂ ଶିର ତୃତୀୟ ଭାଗ । ଏହି ତିନୋଟିଯାକ ଭାଗ ଶରୀର ପାଇଁ ଅତ୍ୟନ୍ତ ଉପଯୋଗୀ । ଏହି ତିନିଭାଗ ବ୍ୟତୀତ ଜୀବନଯାତ୍ରା ଚାଲିପାରେ ନାହିଁ । ଠିକ୍ ସେହିପରି ତ୍ରିଗୁଣମୟୀ ଶକ୍ତିର ଆଧାର ତ୍ରିଦେବଙ୍କ ବିନା ସୃଷ୍ଟିର ପ୍ରକ୍ରିୟା ଚାଲିପାରେ ନାହିଁ । ତେଣୁ ଆମ ସମାଜରେ 'ତିନି' ସଂଖ୍ୟାର ମହତ୍ତ୍ୱ ରହିଛି—ତ୍ରିକାଳ, ତ୍ରିଦୋଷ, ତ୍ରିଦେବ, ତ୍ରିଭୁବନ, ତ୍ରିବେଦ, ତ୍ରିଗୁଣ ପ୍ରଭୃତି । ଏହି ତିନୋଟି ମଧ୍ୟରୁ ଗୋଟିକୁ ଅବହେଳା କଲେ ତିନିଗୋଟିଯାକ ବିପର୍ଯ୍ୟସ୍ତ ହୋଇଯାଏ । ଏଣୁ ସତ୍ୟ ସନାତନ ମାର୍ଗର ଅନୁସରଣ କରିବା ସଂସାର ପକ୍ଷରେ ମଙ୍ଗଳଦାୟକ ।

ମୈତ୍ରେୟ ମୁନି କହିଲେ—"ହେ ବିଦୁର, ସମସ୍ତଙ୍କ ସ୍ତୁତିରେ ଭଗବାନ୍ ବିଷ୍ଣୁ ସନ୍ତୁଷ୍ଟ ହୋଇଥିଲେ । ସମ୍ମୁଖରେ ଦକ୍ଷପ୍ରଜାପତି ହାତଯୋଡ଼ି ଛିଡ଼ା ହୋଇଥିଲେ ତାଙ୍କୁ ଶୁଣାଇବାଲାଗି ମେଘ ମନ୍ଦ୍ର ବାଣୀରେ କହିଲେ ପଦ୍ମନାଭ ବିଷ୍ଣୁ—"ପ୍ରଜାପତି, ତୁମେ ଯଜ୍ଞରୁ ଶିବଙ୍କୁ ବହିଷ୍କାର କରି କେବଳ ତାଙ୍କୁ ଅପମାନିତ କରିନାହିଁ, ମୋତେ ମଧ୍ୟ ଯଜ୍ଞରୁ ବହିଷ୍କାର କରିବାର ଧୃଷ୍ଟତା କରିଛ ।"

ଦକ୍ଷ ଅତ୍ୟନ୍ତ ବିନୀତ ଭାବରେ କହିଲେ—"ପ୍ରଭୋ, ଆପଣଙ୍କ ନିମିତ୍ତ ମୁଁ ଏହି ଆଡ଼ମ୍ବରର ଆୟୋଜନ କରିଛି, ମୁଁ ବୈଷ୍ଣବ ଯଜ୍ଞ ଆରମ୍ଭ କରିଛି; କିନ୍ତୁ ଆପଣ ସେଥିରେ ଉପସ୍ଥିତ ହେଲେନାହିଁ । ଏହା ମୋ ଭାଗ୍ୟର ଦୋଷ ।"

ଏହା ଶୁଣି ବିଷ୍ଣୁ କହିଲେ—"ଦକ୍ଷ, ତୁମେ ଆଦୌ ବୁଝିପାରିଲ ନାହିଁ ! ତୁମେ ମୋ ନିମିତ୍ତ ସବୁ କିଛି ଆୟୋଜନ କରିଥିଲେହେଁ, ଶିବଙ୍କୁ ଆବାହନ ନକରି ଭୁଲ୍ କରିଛ; କାରଣ ଶିବଙ୍କଠାରୁ ମୁଁ ପୃଥକ୍ ନୁହେଁ । କୌଣସି ବ୍ୟକ୍ତିର ପାଦକୁ ଆବାହନ କରି ସମଗ୍ର ଶରୀରକୁ ଅବହେଳା କଲେ, ପାଦ ଆସିବ କିପରି ? ଶିବ ଓ ବ୍ରହ୍ମା ମୋର ଅନ୍ୟ ରୂପ । ଜଗତର କର୍ତ୍ତା, ହର୍ତ୍ତା, କାର୍ଯ୍ୟକାରଣ ସବୁ କିଛି ମୁଁ । ତ୍ରିଗୁଣମୟୀ ଶକ୍ତିର ଆଧାର ମୁଁ । ଜଗତର ପାଳନ ଲାଗି ବିଷ୍ଣୁ । ସୃଷ୍ଟି ଲାଗି ବ୍ରହ୍ମା ଓ ସଂହାର ଲାଗି ରୁଦ୍ର ରୂପରେ ମୁଁ ପ୍ରତିଭାତ ହୁଏ । ଏହି ତ୍ରିଗୁଣାତ୍ମଶକ୍ତିଭୂତ ଦେବ ନାମ ମାତ୍ରକେ ପୃଥକ୍ ହେଲେହେଁ ଏକାତ୍ମା ଅଟନ୍ତି ।

ଦକ୍ଷ ପୁଣି ବିନୀତ ସ୍ୱରରେ କହିଲେ—"ପ୍ରଭୋ, ତା'ହେଲେ ଲୋକମାନେ ଆପଣମାନଙ୍କୁ ପୃଥକ୍ ପୃଥକ୍ ବୋଲି କହୁଛନ୍ତି କାହିଁକି ? ବ୍ରହ୍ମା ରଜୋଗୁଣସମ୍ପନ୍ନ, ଶିବ ତମୋଗୁଣଯୁକ୍ତ ଏବଂ ବିଷ୍ଣୁ ସତ୍ତ୍ୱ ସ୍ୱରୂପ ଅଟନ୍ତି । ତେଣୁ ସାତ୍ତ୍ୱିକ ଭାବାପନ୍ନ ବ୍ୟକ୍ତି ବିଷ୍ଣୁଙ୍କ ଉପାସନାରେ ତତ୍ପର ହୁଅନ୍ତି । ସେମାନେ ଶିବ ଉପାସନା କରନ୍ତି ନାହିଁ ।"

ବିଷ୍ଣୁ ସଙ୍ଗେ ସଙ୍ଗେ ଉତ୍ତରଦେଇ କହିଲେ—"ଏପରି ଧାରଣା ମୂର୍ଖମାନଙ୍କର ହୋଇଥାଏ । ଯେଉଁମାନେ ବୃଦ୍ଧମାନଙ୍କ ସେବା କରି ନାହାନ୍ତି କିମ୍ବା ସତ୍‌ଶାସ୍ତ୍ର ଅଧ୍ୟୟନ

କରି ନାହାନ୍ତି, ସେହିମାନଙ୍କ ମନରେ ଏପ୍ରକାର ଧାରଣା ଜାତ ହୋଇଥାଏ । ସର୍ବାନ୍ତର୍ଯାମୀ ଅଦ୍ୱିତୀୟ ବ୍ରହ୍ମଙ୍କଠାରେ ଭେଦ-ଭାବ କେଉଁଠୁ ଆସିଲା ? ମନୁଷ୍ୟର ହାତ, ଗୋଡ଼, ଆଖି, ନାକ ଓ ଶିର ରହିଛି । ପ୍ରତ୍ୟେକଟିକୁ ପୃଥକ୍ କରି ମନୁଷ୍ୟତ୍ୱର କଳ୍ପନା କରି ହୁଏନାହିଁ । ସେହିପ୍ରକାର ବିଷ୍ଣୁ, ବ୍ରହ୍ମା ଓ ଶିବଙ୍କୁ ପୃଥକ୍ ବୋଲି ଚିନ୍ତା କରି ହୁଏନାହିଁ ।''

ଏହା ଶୁଣି ଦକ୍ଷ କହିଲେ—''ତା'ହେଲେ ଜଣେ ଦେବଙ୍କୁ ପୂଜା କଲେ, ଅନ୍ୟମାନେ ସନ୍ତୁଷ୍ଟ ହୁଅନ୍ତିନାହିଁ କାହିଁକି ? ଯେପରି ମୂଳରେ ପାଣି ଦେଲେ, ସମୁଦାୟ ବୃକ୍ଷଟି ଶୀତଳତା ଅନୁଭବ କରେ, ସେହିପରି ବିଷ୍ଣୁଙ୍କ ଆରାଧନା ଫଳରେ ଅନ୍ୟ ଦୁଇଜଣ ଦେବ ସନ୍ତୁଷ୍ଟ ହେବା ଆବଶ୍ୟକ ।''

ଭଗବାନ୍ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ—''ତାହା ଅବଶ୍ୟ ଠିକ୍ ! ରାଗ, ଦ୍ୱେଷ ରହିତ ହୋଇ ଯେଉଁ ବ୍ୟକ୍ତି ଏପରି ପୂଜା କରେ, ଆମେମାନେ ତା' ପୂଜାରେ ସନ୍ତୁଷ୍ଟ ହେଉ; କିନ୍ତୁ ଯେଉଁ ବ୍ୟକ୍ତି ମନରେ ଭେଦଭାବ ରଖି ଆମମାନଙ୍କ ମଧ୍ୟରୁ, କୌଣସି ଗୋଟିଏ ଦେବଙ୍କୁ ଆରାଧନା କରେ ଏବଂ ଅନ୍ୟ ଦୁଇଜଣ ଦେବଙ୍କୁ ଅବହେଳା ପ୍ରଦର୍ଶନ କରେ, ତା'ର ଉପାସନାରେ ଆମେ କେହି ଜଣେ ହେଲେ ସନ୍ତୁଷ୍ଟ ହେଉନାହିଁ । କାରଣ, ତତ୍ତ୍ୱବୋଧ ଦୃଷ୍ଟିରୁ ସେ ବ୍ୟକ୍ତି ନିତାନ୍ତ ଅଜ୍ଞାନ ତଥା ଭେଦବୁଦ୍ଧିଯୁକ୍ତ ବୋଲି ଆମର ଧାରଣା ହୁଏ । ସେ କେବେହେଲେ ସିଦ୍ଧିଲାଭ କରିପାରେନାହିଁ । ଯେଉଁ ବ୍ୟକ୍ତି ଭେଦ-ଭାବନାରୁ ମୁକ୍ତ ହୋଇ ଆମର ଆରାଧନା କରେ, ସେ ଅଳ୍ପକାଳ ମଧ୍ୟରେ ସିଦ୍ଧିର ଅଧିକାରୀ ହୋଇଥାଏ । ପ୍ରଜାପତି, ତୁମେ ଭୁଲ୍ କରିଛ । ଏଥର ତୁମେ ମନରେ ଭେଦଭାବ ନରଖି ଆମର ଆରାଧନା କର, ତୁମେ କଲ୍ୟାଣ ମାର୍ଗର ଅଧିକାରୀ ହୋଇ ପାରିବ ।''

ମୈତ୍ରେୟ କହିଲେ—''ହେ ବିଦୁର ! ବିଷ୍ଣୁଙ୍କର ଏପରି ସାରଗର୍ଭିକ ଉପଦେଶ ଶୁଣି ଦକ୍ଷପ୍ରଜାପତି କୃତାର୍ଥ ହୋଇଗଲେ । ସେ ତ୍ରିମୂର୍ତ୍ତିଙ୍କଠାରେ ସମଭାବ ପ୍ରଦର୍ଶନ କରି ଯଜ୍ଞରେ ବିଷ୍ଣୁଙ୍କୁ ଆରାଧନା କଲେ ଏବଂ ଯଜ୍ଞରେ ସବୁ ଦେବତାଙ୍କ ଭାଗ ନିର୍ଣ୍ଣୟ କରି ଉପାସନା କରିବାକୁ ଲାଗିଲେ । ବିଶେଷତଃ ଯଜ୍ଞରେ ରୁଦ୍ରଙ୍କ ଭାଗକୁ ସମାଦରରେ ପ୍ରଦାନ କଲେ । ଯଜ୍ଞରେ ବରଣ ହୋଇଥିବା ଋତ୍ୱିକ୍‌ମାନଙ୍କୁ ଦକ୍ଷିଣାଦାନରେ ସନ୍ତୁଷ୍ଟ କରାଇଲେ । ତେଣୁ ବିଷ୍ଣୁଙ୍କ ସମେତ ସମସ୍ତ ଦେବଗଣ ଦକ୍ଷଙ୍କ ପୂଜାରେ ସନ୍ତୋଷ ପ୍ରକାଶ କଲେ ଏବଂ ନିଜ ନିଜର ଯଜ୍ଞଭାଗ ପାଇ ପରମ ଆନନ୍ଦରେ ଦକ୍ଷଙ୍କୁ ଆଶୀର୍ବାଦ କଲେ । ସେ ଯଜ୍ଞ ଶେଷରେ ଶାସ୍ତ୍ରୀୟ ବିଧିବିଧାନର ସହିତ 'ଅବଭୃଥ' ସ୍ନାନ କଲେ । ସ୍ନାନ କରୁଥିବା ସମୟରେ ଦକ୍ଷଙ୍କ ପରିବାରବର୍ଗ ଆନନ୍ଦମଗ୍ନ ହୋଇ ଜଳକ୍ରୀଡ଼ା ଆରମ୍ଭ କଲେ । ଏହିପରି ଭାବରେ ଅତ୍ୟନ୍ତ ହର୍ଷୋଲ୍ଲାସରେ 'ଅବଭୃଥ'ସ୍ନାନ ସମାପ୍ତ ହେଲା । ତତ୍ପରେ ଦକ୍ଷ ଅସଂଖ୍ୟ ବ୍ରାହ୍ମଣଙ୍କୁ ଭୂରି ଭୋଜନରେ ତୃପ୍ତ କରାଇ ସମୁଚିତ ଦକ୍ଷିଣା ପ୍ରଦାନ କଲେ ।''

ବିଦୂର ! ଦକ୍ଷଙ୍କର ପୂଜାରେ ସନ୍ତୁଷ୍ଟ ହୋଇ ଦେବତାମାନେ ତାଙ୍କୁ ଆଶୀର୍ବାଦ ଦେଇ କହିଲେ—"ତୁମ ମନରେ ଏହିପରି ଉଦାରତା ସର୍ବଦା ଜାଗ୍ରତ ହେଉ ! ତୁମେ ସର୍ବଦା ପ୍ରଜାମାନଙ୍କ ପାଳନରେ ସମର୍ଥ ହୁଅ !" ଏହି ପ୍ରକାର ଆଶୀର୍ବାଦ ଦେଇ ଦେବଗଣ ସ୍ୱର୍ଗକୁ ଗମନ କଲେ ଏବଂ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସ୍ୱ ସ୍ୱ ଧାମକୁ ବିଜେ କଲେ ।

"ହେ ବିଦୁର, ଅତ୍ୟନ୍ତ ସଂକ୍ଷେପରେ ମୁଁ ଆପଣଙ୍କୁ ଦକ୍ଷଯଜ୍ଞର ଉପାଖ୍ୟାନ ଶୁଣାଇଲି । ଆପଣ ଆଉ କ'ଣ ଶୁଣିବାକୁ ଚାହାନ୍ତି ?"

ଏହା ଶୁଣି କହିଲେ ଭକ୍ତ ବିଦୁର—"ମୁଁ ଅତ୍ୟନ୍ତ ପ୍ରୀତ ହେଲି; କିନ୍ତୁ ସତୀ ହେଉଛନ୍ତି—ଅନାଦି ଶକ୍ତି । ସେ ଶିବଙ୍କୁ ଛାଡ଼ି ପୃଥକ୍ ରହିପାରିବେ ନାହିଁ । ଯଜ୍ଞରେ ସତୀଙ୍କ ଦେହ ଭସ୍ମ ହୋଇ ଯିବାପରେ, ସେ କେଉଁ ରୂପରେ ତଥା କିପରି ଭାବରେ ଶିବଙ୍କୁ ପ୍ରାପ୍ତ ହେଲେ, ତାହା ମୋତେ ଅନୁଗ୍ରହ କରି ଶୁଣାଇବା ହୁଅନ୍ତୁ ।"

ଏହା ଶୁଣି ମୈତ୍ରେୟ ମୁନି ସତୀଙ୍କ ପରଜନ୍ମ କାହାଣୀ ଶୁଣାଇବା ପାଇଁ ଉଦ୍ୟତ ହେଲେ ।

## ଛପ୍ପୟ

"ଫିର ସବ ବିଧିବତ୍ ବିପ୍ର ପିତର ପୂଜେ ଋଷି ମୁନି ସୁର ।
ଭୟୋ ଯଜ୍ଞ ପରିପୂର୍ଣ୍ଣ ଗୟେ ସବ ଜନ ନିଜ ନିଜ ପୁର ॥
ପ୍ରଜାପତିନି କେ ଈଶ ଦକ୍ଷ ମନ ମହଁ ଅତି ହରଷେଂ ।
ବଜେ ଦୁନ୍ଦୁଭି ଆଦି କୁସୁମ ସୁରଦ୍ରୁମ କେ ବରଷେ ॥
ଦକ୍ଷ ଯଜ୍ଞ କୀ କଥା ଜିହ, ବିଦୁର ଯଥା ମତି ସବ କହୀ ।
ପୂଛୋ ତୁମ ଜୋ ହୃଦୟ ମହଁ ଶଙ୍କା ଅବ ଜୋ କଛୁ ରହୀ ॥"



# ସତୀଙ୍କ ପୁନର୍ଜନ୍ମ

"ଏବଂ ଦାକ୍ଷାୟଣୀ ହିତ୍ୱା ସତୀ ପୂର୍ବ କଳେବରମ୍ ।
ଜଜ୍ଞେ ହିମବତଃ କ୍ଷେତ୍ରେ ମେନାୟାମିତି ଶୁଶ୍ରୁମ ॥"

(ଭାଗବତ ୪।୭।୫୮)

## ଛପ୍ପୟ

"ବିଦୁର କହେଂ ଗୁରୁଦେବ ସତୀ ତୋ ଶକ୍ତି ସନାତନ ।
ଶିବ ତଜି ଅନତ ନ ଜାହିଁ ସୁନୀ ଜିହ ପ୍ରଥା ପୁରାତନ ॥
କୈସେ ତଜି କେ ଦେହ ମିଲୀ ଫିର ଜସ ଶଙ୍କର କୁଁ ।
ଜିହ ଧ୍ୟାଓ୍ୱତ ତନୁ ତଜହିଁ ଫେରି ପାଓ୍ୱହିଁ ତିହିଁ ବରକୁଁ ॥
ମୁନି ବୋଲେ ମୈତ୍ରେୟ ମୁନି, ବିଦୁର ! ସୁନୋ ଇତିହାସ ସବ ।
ହିମଗିରି ମେନା କୀ ସୁତା, ସତୀ ଭଈଂ ଜସ କହୁଁ ଅବ ॥"

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଭଗବତୀ ସତୀ ନିଜର ପୂର୍ବ ଦେହକୁ ତ୍ୟାଗ କରି ହିମାଳୟଙ୍କ ଗୃହରେ ତାଙ୍କ ପତ୍ନୀ ମେନାଙ୍କ ଗର୍ଭରେ ପାର୍ବତୀ ରୂପରେ ପୁଣି ଥରେ ପ୍ରକଟ ହେଲେ । ମୁଁ ପୂର୍ବାଚାର୍ଯ୍ୟଙ୍କଠାରୁ ଏହା ଶୁଣିଅଛି ।"

ଏପରି ଦେଖାଯାଏ ଯେ, କୌଣସି କୌଣସି ବ୍ୟକ୍ତିଙ୍କୁ ଦେଖିବାମାତ୍ରେ ତାଙ୍କ ଆଡ଼କୁ ଆମମନ ସ୍ୱତଃ ଆକର୍ଷିତ ହୋଇଯାଏ । ତାକୁ ଆମେମାନେ ପରମ ଆତ୍ମୀୟରୂପେ ଗ୍ରହଣ କରୁଥାଉଁ । ଅନ୍ୟ କେତେକଙ୍କ ସହିତ ଅନେକ ଦିନ ଧରି ବସବାସ କଲେ ମଧ୍ୟ

ତା'ଆଡ଼କୁ ଆମ ମନ ଆକର୍ଷିତ ହୁଏନାହିଁ । କେତେକ ବ୍ୟକ୍ତି ଜୀବନରେ ଆଦୌ ଦେଖି ନଥିବା ବ୍ୟକ୍ତି ପ୍ରତି ମଧ୍ୟ ମନରେ ଶତ୍ରୁଭାବ ପୋଷଣ କରନ୍ତି । ଏହାର କାରଣ କ'ଣ ? ଏହା ପୂର୍ବଜନ୍ମର ସଂସ୍କାରର ଫଳ । ପୂର୍ବଜନ୍ମରେ ଯାହା ସହିତ ଆମର ସୁସମ୍ପର୍କ ଥାଏ, ଏ'ଜନ୍ମରେ ତାକୁ ଦେଖିବାମାତ୍ରେ ଆମ ମନରେ ତା'ପ୍ରତି ଆକର୍ଷଣ ଜନ୍ମିଥାଏ । ଏହି ସମ୍ପର୍କ ପରଜନ୍ମକୁ ମଧ୍ୟ ରହିଥାଏ । ମନୁଷ୍ୟର ପାପ ଓ ପୁଣ୍ୟ ତା ସହିତ ସର୍ବଦା ଲାଗି ରହିଥାଏ । ତେଣୁ ଆମର ପୂର୍ବଜନ୍ମର ପାପ ବା ପୁଣ୍ୟ ଆମକୁ ଏ'ଜନ୍ମରେ ଭୋଗ କରିବାକୁ ପଡ଼େ ଏବଂ ଏ'ଜନ୍ମର ପାପ ପୁଣ୍ୟ ପରଜନ୍ମରେ ଭୋଗ ହେବାକୁ ସଞ୍ଚିତ ହୋଇ ରହେ । ମନ ସର୍ବଦା କୌଣସି ଗୋଟିଏ ବିଷୟ ଚିନ୍ତା କରୁଥାଏ । ଏହି ଚିନ୍ତାର ସଂସ୍କାର ଆମ ହୃଦୟରେ ଆସନ ଜମାଇ ରହେ ।

କେତେକ ସଂସ୍କାର ଅତି ମାମୁଲି ଧରଣର ପ୍ରଭାବ ଆମ ମନ ଉପରେ ପକାଇଥାଏ । ସେଭଳି କେତେକ ସଂସ୍କାର ଆମର ସ୍ୱପ୍ନରେ ଭୋଗ ହୋଇଥାଏ । ତେଣୁ ଆମର କେତେକ ଗୁରୁତ୍ୱପୂର୍ଣ୍ଣ ପାପ ପୁଣ୍ୟ ଫଳ ଆମକୁ ଇହଜନ୍ମରେ ଭୋଗହୁଏ । ଅନ୍ୟ କେତେକ ସାମାନ୍ୟ ସଂସ୍କାର ସ୍ୱପ୍ନ ମାଧ୍ୟମରେ, ଭୋଗ ହୋଇଥାଏ । ଯେଉଁ ବ୍ୟକ୍ତି ସହିତ ଆମର କୌଣସି ସମ୍ପର୍କ ନାହିଁ, ସେହି ବ୍ୟକ୍ତି ଅନେକ ସମୟରେ ଆମକୁ ସ୍ନେହ କରେ । ଏଥିରୁ ବୁଝାଯାଏ ଯେ, ସେହି ବ୍ୟକ୍ତି ସହିତ ଆମର ସମ୍ପର୍କ ପୂର୍ବଜନ୍ମରେ ଥିଲା । ଯେଉଁ ବ୍ୟକ୍ତି ପ୍ରତି ଆମ ମନରେ ଅଶେଷ ଶ୍ରଦ୍ଧା ଉତ୍ପନ୍ନ ହେଉଛି, ସେ ବ୍ୟକ୍ତି ଆମକୁ ପରଜନ୍ମରେ ଅବଶ୍ୟ ପ୍ରାପ୍ତ ହେବ । ଏହା ଏକ ପାରମ୍ପରିକ ନିୟମ !

ଏହି କଥା ଚିନ୍ତାକରି ଶୌନକ ସୂତଙ୍କୁ ପଚାରିଲେ—"ହେ ସୂତ ମହର୍ଷି, ସତୀଦେବୀ ଶିବଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ଶିବ ମଧ୍ୟ ସତୀଙ୍କୁ ଅନ୍ତରିକତାର ସହିତ ଭଲ ପାଉଥିଲେ । ତା'ର ପ୍ରମାଣ ସ୍ୱରୂପ ଶିବ ଅର୍ଦ୍ଧନାରୀଶ୍ୱର ରୂପରେ ପ୍ରତିଭାତ ହୋଇଥିଲେ । ଘଟଣାକ୍ରମରେ ପିତାଙ୍କ ଅପମାନ ସହି ନପାରି ସତୀ ପ୍ରାଣ ତ୍ୟାଗ କରିଥିଲେ । ଶରୀର ତ୍ୟାଗ କରୁଥିବା ସମୟରେ ଦେବୀ ସତୀ ଶିବଙ୍କୁ ପରଜନ୍ମରେ ପତିରୂପେ ପାଇବା ପାଇଁ କାମନା କରିଥିଲେ । ଆହୁରି ମଧ୍ୟ ଆମେ ଶୁଣିଛୁ ଯେ, ସତୀଙ୍କ ବିୟୋଗରେ ଶିବ ଉନ୍ମତ୍ତ ହୋଇ ଯାଇଥିଲେ । ଶିବ ପ୍ରାଣପ୍ରିୟାଙ୍କ ବିୟୋଗରେ ଅଧୀର ହୋଇ ହିତାହିତ ଜ୍ଞାନ ହରାଇ ବସିଥିଲେ; ଏପରିକି, ସେ ଉଲଗ୍ନ ହୋଇ ଶ୍ମଶାନରେ ଉନ୍ମତ୍ତଙ୍କ ପରି ନଗ୍ନନୃତ୍ୟ କରିଥିଲେ । ସେ ସତୀଙ୍କ ଶିରକୁ ମାଳା କରି ପିନ୍ଧିବା ସଙ୍ଗେସଙ୍ଗେ ତାଙ୍କ ଶରୀରର ଭସ୍ମରାଶିକୁ ଅଙ୍ଗରେ ବୋଳି ହୋଇ ଶାନ୍ତି ପାଇପାରି ନଥିଲେ । ଏପରି ପ୍ରେମ ଥିଲେ ମଧ୍ୟ ଶିବ ଶିବାଙ୍କଠାରୁ ଅନ୍ତର ହେଲେ କିପରି ?"

ଏହା ଶୁଣି ସୂତ ମହର୍ଷି କହିଲେ—"ହେ ମହାଭାଗ ! ପ୍ରକୃତ ପ୍ରଣୟୀ ଓ ପ୍ରଣୟିନୀଙ୍କର କେବେହେଲେ ବିୟୋଗ ହୁଏ ନାହିଁ । ଶରୀରର ବିୟୋଗ ଫଳରେ ହୃଦୟର ପ୍ରେମ ଅଧିକ

ବୃଦ୍ଧି ପାଇଥାଏ । ବିୟୋଗ ନ ହେଲେ କେବେହେଲେ ସଂଯୋଗର ସୁଖ ମିଳେନାହିଁ । ଶିବ ଓ ଶିବା ଦୁହେଁ ଅଭିନ୍ନ । ସେ ଯେଉଁ ଲୀଳା ସଂସାରରେ ପ୍ରକଟ କରିଛନ୍ତି; ତାହା ଭକ୍ତମାନଙ୍କ ଆନନ୍ଦ ଉଦ୍ଦେଶ୍ୟରେ ଅଭିପ୍ରେତ । ତାହାର ଫଳରେ ଶିବଶିବାଙ୍କ ପ୍ରତି ଆମ ମନରେ ଅନୁରାଗ ଜାତ ହେଉଛି । ସେହି କୌତୂହଳ ଆମ ମନରେ ଜାତ କରାଇବା ପାଇଁ ଶିବା ହିମାଳୟଙ୍କ ପତ୍ନୀ ମେନାଙ୍କ ଗର୍ଭରେ ଜାତ ହୋଇଥିଲେ ।''

ଏହି ଉତ୍ତର ଶୁଣି ପୁଣି ପଚାରିଲେ ଶୌନକ—''ହେ ମହୋଦୟ, ହିମାଳୟ ଗୋଟିଏ ଜଡ଼ ବସ୍ତୁ । ତା'ର ପୁଣି ପତ୍ନୀ ଆସିଲା କେଉଁଠୁ ? ସେହି ପତ୍ନୀଙ୍କ ଉଦରରୁ ସତୀ ଜାତ ହେଲେ କିପରି ?''

ଏହା ଶୁଣି କହିଲେ ସୁତ—''ହେ ମହର୍ଷି, ଜଡ଼ କିଏ ? ସବୁଠାରେ ଚୈତନ୍ୟ ପୂରି ରହିଛି । ପ୍ରତ୍ୟେକଠାରେ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଶକ୍ତି ରହିଛି । ଆଧ୍ୟାତ୍ମ ରୂପରେ ଶ୍ରୀହରି ପ୍ରତ୍ୟେକ ଘଟରେ ପୂରି ରହିଛନ୍ତି; କିନ୍ତୁ ଆଧିଭୌତିକ ରୂପରେ ସେ ପଞ୍ଚଭୂତରେ ନିର୍ମିତ ପ୍ରାଣୀ ରୂପରେ ପ୍ରତିଭାତ ହୁଅନ୍ତି । ସେହିପରି ଭାବରେ ମାଟି, ପଥର, ଗୁମ୍ଫା, ବୃକ୍ଷର ସମଷ୍ଟି ହିମାଳୟ ଆମ ଆଗରେ ଆଧିଭୌତିକ ରୂପରେ ପରିଲକ୍ଷିତ ହେଉଛନ୍ତି; କିନ୍ତୁ ଏହାର ଅଧିଷ୍ଠାତୃ ଦେବ ବିଷ୍ଣୁ ଅଂଶରେ ଅବତାର ଗ୍ରହଣ କରିଛନ୍ତି । ସେ ହେଉଛନ୍ତି—ଗିରିରାଜ ହିମାଳୟ । ପିତରମାନଙ୍କ ଜ୍ୟେଷ୍ଠାକନ୍ୟା ମେନା ସହିତ ତାଙ୍କର ବିବାହ ସମ୍ପନ୍ନ ହୋଇଛି । ସେହି ମେନା ଭଗବତୀ ପାର୍ବତୀଙ୍କର ମାତା ରୂପେ ବିଶ୍ୱବନ୍ଦ୍ୟ ପଦରେ ପରିଚିତା ।''

ଏହି କୌତୁହଳୋଦ୍ଦୀପକ ଆଖ୍ୟାନ ଶୁଣି ଶୌନକଙ୍କ ମନରେ ଜିଜ୍ଞାସା ଉତ୍ପନ୍ନ ହେଲା । ସେ ପଚାରିଲେ—''ହେ ସୁତ ମହର୍ଷି ! ଏହି ପରମ ସୌଭାଗ୍ୟବତୀ ମେନା କେଉଁ ପୁଣ୍ୟ ବଳରେ ଜଗଜ୍ଜନନୀଙ୍କର ମାତା ହେବାର ଅଧିକାରିଣୀ ହୋଇ ପାରିଲେ, ତାହା ମୋତେ କହନ୍ତୁ ।''

ଶୌନକଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲେ ସୁତ—''ହେ ଶୌନକ, କୌଣସି କର୍ମଦ୍ୱାରା କେହି ଏ'ଭଳି ଗୌରବମୟ ପଦର ଅଧିକାରିଣୀ ହୋଇ ନପାରେ । ଯାହା ପ୍ରତି ଜଗନ୍ମାତା ସ୍ୱୟଂ କୃପା କରନ୍ତି, ସେହି କେବଳ ଏ'ଭଳି ସୌଭାଗ୍ୟ ଲାଭ କରିଥାଏ । ତଥାପି ଜଗଜ୍ଜନନୀ ସେଭଳି ସୌଭାଗ୍ୟର ଅଧିକାରିଣୀ ହେବା ପାଇଁ ଗୋଟିଏ କାରଣ ସ୍ଥିର କରାଇ ଦିଅନ୍ତି । ମୁଁ ପୂର୍ବରୁ କହିଛି—ଦକ୍ଷଙ୍କର କନ୍ୟା ସ୍ୱଧାଙ୍କୁ ପିତୃମାନେ ମେନା, ଧନ୍ୟା ଓ କଳାବତୀ ନାମରେ ତିନୋଟି କନ୍ୟା ରୂପରେ ପରିଣତ କରିଥିଲେ । ସେ ତିନିଜଣ ପିତରମାନଙ୍କର ମାନସ କନ୍ୟା ହୋଇଥିବାରୁ, ସେମାନେ ଯେକୌଣସି 'ଲୋକ' (ପୁର)କୁ ଅନାୟାସରେ ଯାଇ ପାରୁଥିଲେ । ଦିନେ ସେହି କନ୍ୟା ତିନିଜଣ ବ୍ରହ୍ମଲୋକରେ ଗୋଟିଏ

ସଭାରେ ବସିଥିଲେ । ଏହି ସମୟରେ ସନକ, ସନନ୍ଦନ, ସନତ୍‌କୁମାର ଓ ସନାତନ ସେହି ସଭାରେ ଉପସ୍ଥିତ ହେଲେ । ସେମାନେ ଆଦିପୁରୁଷ ହୋଇଥିବାରୁ, ସମସ୍ତେ ଆସନରୁ ଉଠି ସେମାନଙ୍କୁ ଅଭ୍ୟର୍ଥନା କଲେ; କିନ୍ତୁ ମେନା ଆଦି ତିନିକନ୍ୟା ଆଦିପୁରୁଷଙ୍କ ଅଲୌକିକ ତେଜରେ ଆଶ୍ଚର୍ଯ୍ୟାନ୍ୱିତା ହୋଇ ତାଙ୍କର ଆଡ଼କୁ ଏକଧ୍ୟାନରେ ଚାହିଁ ନିଜନିଜର କର୍ତ୍ତବ୍ୟ ଭୁଲିଗଲେ । ଏହା କନ୍ୟାଙ୍କର ଔଦ୍ଧତ୍ୟ ବୋଲି ସେମାନେ ମନେକଲେ । ସନତ୍‌କୁମାର ସେମାନଙ୍କୁ ଅଭିଶାପ ଦେଇ କହିଲେ—"ତୁମେମାନେ ମର୍ତ୍ତ୍ୟମଣ୍ଡଳରେ ଜନ୍ମ ଗ୍ରହଣ କର ।"

ଏହା ଶୁଣି କନ୍ୟାମାନେ ବିନୀତ ଭାବରେ କହିଲେ—"ମହାତ୍ମନ୍, ଆପଣମାନଙ୍କୁ ଦେଖି ଆମ ମନରେ କୌଣସି ପ୍ରକାର ବିକାର ଜାତ ହୋଇନାହିଁ । ଆମେ ଆପଣମାନଙ୍କର ସ୍ୱର୍ଗୀୟ ସୌନ୍ଦର୍ଯ୍ୟକୁ ଆଶ୍ଚର୍ଯ୍ୟାନ୍ୱିତା ହୋଇ ଚାହିଁ ଆମର କର୍ତ୍ତବ୍ୟ ପାସୋର ଦେଇଥିଲୁ । ଏହା ଆମମାନଙ୍କର ଜ୍ଞାନକୃତ ଅପରାଧ ନୁହେଁ ।"

ଏହା ଶୁଣି ମୁନି ସନତ୍‌କୁମାର ହଠାତ୍ ପ୍ରସନ୍ନ ହୋଇ କହିଲେ—"ଦେବି ! ମୋ ଅଭିଶାପ ନିଷ୍ଫଳ ହେବ ନାହିଁ । କିନ୍ତୁ ତୁମେମାନେ ନିରପରାଧ ହୋଇ ଥିବାରୁ, ତୁମ ତିନିକନ୍ୟାଙ୍କ ଗର୍ଭରୁ ଜଗଜ୍ଜନନୀ ତିନି ରୂପରେ ଜନ୍ମ ଗ୍ରହଣ କରିବେ । ସେହି ଜଗନ୍ମୋହିନୀ ମହାମାୟାଙ୍କ ଦର୍ଶନରେ ତୁମେ ମୁକ୍ତିଲାଭ କରି ପୁଣି ବ୍ରହ୍ମଲୋକକୁ ଫେରି ଆସିବ ।"

ସୂତ ମହର୍ଷି କହିଲେ—"ହେ ମୁନିଗଣ, ସନତ୍‌କୁମାରଙ୍କ କ୍ରୋଧ ଫଳବତ୍ ହୋଇ-ଥିଲେହେଁ କନ୍ୟାମାନଙ୍କର କିଛି ଦୋଷ ନଥିବାରୁ, ସେମାନେ ମର୍ତ୍ତ୍ୟଲୋକରେ ଜଗଜ୍ଜନନୀଙ୍କ ମାତା ହେବାର ସୌଭାଗ୍ୟ ଲାଭ କରିଥିଲେ । ସେ ତିନିହେଁ ମର୍ତ୍ତ୍ୟଲୋକରେ ଅବତୀର୍ଣ୍ଣା ହୋଇ ଜ୍ୟେଷ୍ଠାକନ୍ୟା ମେନା ସତ୍ୟଯୁଗରେ ହିମାଳୟଙ୍କ ପତ୍ନୀ ହୋଇ ପାର୍ବତୀଙ୍କୁ ଜନ୍ମ ଦେଲେ । ମଧ୍ୟମା କନ୍ୟା ଧନ୍ୟା ତ୍ରେତୟା ଯୁଗରେ ଜନକଙ୍କ ପତ୍ନୀ ହୋଇ ସୀତାଙ୍କ ମାତା ହୋଇଥିଲେ ଏବଂ ଦ୍ୱାପର ଯୁଗରେ ତୃତୀୟା କନ୍ୟା ବୃଷଭାନୁଙ୍କ ପତ୍ନୀ କଳାବତୀରୂପେ ପରମ ପୂଜନୀୟା ରାଧିକାଙ୍କ ମାତା ହେବାର ସୌଭାଗ୍ୟ ଲାଭ କରିଥିଲେ ।"

"ହେ ମୁନିଗଣ, ମେନା ହିମାଳୟଙ୍କର ପତ୍ନୀ ହୋଇଥିବାରୁ, ସେ କୈଳାସପତି ଶିବଙ୍କର ସାନ୍ନିଧ୍ୟ ଲାଭ କରିଥିଲେ । ତେଣୁ ପରକାଳରେ ସେ ପାର୍ବତୀଙ୍କ ମାତା ହେବାର ଗୌରବପ୍ରାପ୍ତ ହୋଇଥିଲେ ।"

ଏହା ଶୁଣି କହିଲେ ଶୌନକ—"ହେ ମହାଭାଗ, ମହାଭାଗ୍ୟବତୀ ମେନା କେଉଁ ସୁକୃତ ବଳରେ ପାର୍ବତୀଙ୍କ ମାତା ହେବାର ଗୌରବ ଅର୍ଜନ କରିଥିଲେ ? ସନତ୍‌କୁମାରଙ୍କ ବରଦାନ କ'ଣ ଏକମାତ୍ର କାରଣ କିମ୍ବା ଅନ୍ୟ କୌଣସି କାରଣ ଏଥିରେ ରହିଛି ?"

ଏହାର ଉତ୍ତର ଦେଇ କହିଲେ ସୂତ—"ହେ ମୁନୀଶ୍ୱର, ଦେବୀ ପାର୍ବତୀଙ୍କର ମାତା ହେବା କମ୍ ତପସ୍ୟାର ଫଳ ନୁହେଁ ! ସତୀ ଶିବଙ୍କ ସହିତ କୈଳାସରେ ବାସ କରୁଥିବା ସମୟରେ ମେନା ତାଙ୍କୁ ନିଜର କନ୍ୟାରୂପେ ପ୍ରତିପାଳନ କରୁଥିଲେ ଏବଂ ତାଙ୍କର ପରି ଗୋଟିଏ ପରମ ଗୁଣବତୀ କନ୍ୟା ପାଇବାପାଇଁ ମନେ ମନେ କାମନା କରୁଥିଲେ । ମେନାଙ୍କର ସ୍ନେହରେ ସତୀ ଅତ୍ୟନ୍ତ ଆନନ୍ଦିତା ହୋଇଥିଲେ ଏବଂ ସେ ନିଜ ଜନନୀ ପ୍ରସୂତି ଦେବୀଙ୍କୁ ଭୁଲି ଯାଇଥିଲେ । ସେ ମନେ ମନେ ଭାବିଲେ—'ମୁଁ ପର ଜନ୍ମରେ ମେନାଙ୍କର ପୁତ୍ରୀରୂପେ ଜନ୍ମଗ୍ରହଣ କରି ଶୈଳରାଜଙ୍କ ପତ୍ନୀଙ୍କର ମନସ୍କାମନା ପୂର୍ଣ୍ଣ କରିବି ।' ସେହି ଲୀଳା ରଚନା କରିବା ପାଇଁ ସତୀ ପିତାଙ୍କ ଅପମାନରେ ନିଜକୁ ଯୋଗାଗ୍ନିରେ ଦଗ୍ଧ କରାଇଥିଲେ ।"

ସତୀଙ୍କ ଆତ୍ମୋତ୍ସର୍ଗ ସମ୍ବାଦ ଶୁଣି ମେନା ଦୁଃଖରେ ଅଧୀର ହୋଇ ପଡ଼ିଲେ । ସେ ବାତ୍ସଲ୍ୟ ପ୍ରେମରେ ଏତେ ବିମୋହିତ ହୋଇ ପଡ଼ିଥିଲେ ଯେ, ଜଗଜ୍ଜନନୀ ସତୀଙ୍କ ଅଲୌକିକ ଶକ୍ତି ସମ୍ବନ୍ଧରେ ସେ ଆଦୌ ଧାରଣା କରି ପାରି ନଥିଲେ । ସେ ବାତ୍ସଲ୍ୟର ମାଧୁର୍ଯ୍ୟରେ ବୁଡ଼ି ରହିଥିଲେ ।

ସତୀଙ୍କ ବିୟୋଗରେ ଶିବ ଅତ୍ୟନ୍ତ ଦୁଃଖିତ ହୋଇଥିବାର ଲକ୍ଷ୍ୟ କରି, ଦେବଗଣ ମହାମାୟାଙ୍କୁ ଆରାଧନା କଲେ । ମହାମାୟା ଦେବଗଣଙ୍କ ସମ୍ମୁଖରେ ପ୍ରକଟିତା ହୋଇ କହିଲେ—"ମୁଁ ତୁମମାନଙ୍କ ଆରାଧନାରେ ସନ୍ତୁଷ୍ଟ; ତୁମେମାନେ ତୁମର ଇପ୍ସିତ ବର ପ୍ରାର୍ଥନା କର !"

ଦେବଗଣ ବିନୀତ ଭାବରେ କହିଲେ—"ମାତା, ଜଗତର କଲ୍ୟାଣ ଲାଗି ଆପଣ ସାକାର ରୂପ ଧାରଣ କରନ୍ତୁ ।"

ଦେବଗଣଙ୍କୁ ଆଶ୍ୱାସନା ଦେଇ କହିଲେ ମହାମାୟା—"ମୁଁ ଗିରିରାଜ ହିମାଳୟଙ୍କ ପତ୍ନୀ ମେନାଙ୍କ ବାତ୍ସଲ୍ୟ ମମତାରେ ବାନ୍ଧି ହୋଇଯାଇଛି । ତେଣୁ ମୁଁ ତାଙ୍କର କନ୍ୟା ହୋଇ ଜନ୍ମଗ୍ରହଣ କରିବି ।"

ତାହା ଶୁଣି ବ୍ରହ୍ମାଦି ଦେବଗଣ ମହାମାୟାଙ୍କ ବାଣୀ ହିମାଳୟଙ୍କୁ ଜଣାଇଦେଲେ । ସେହିଦିନଠାରୁ ସନ୍ତାନ କାମନାରେ ମେନା ସର୍ବଦା ଜଗଦମ୍ବିକା କାଳିକାଙ୍କ ଆରାଧନାରେ ନିମଗ୍ନ ହେଲେ । ଏହିପରି ଭାବରେ ମେନା ଅତ୍ୟନ୍ତ ନିଷ୍ଠାର ସହିତ ସତେଇଶ ବର୍ଷ କାଳ ମହାମାୟାଙ୍କୁ ପୂଜା କରିବା ପରେ, ଜଗଦମ୍ବା ତାଙ୍କ ସମ୍ମୁଖରେ ପ୍ରକଟ ହୋଇ ବର ମାଗିବାକୁ କହିଲେ । ମେନା ଦେବୀଙ୍କଠାରୁ ଅଭୟ ପାଇ କହିଲେ—"ମା, ମୁଁ ଶତପୁତ୍ରର ଜନନୀ, ତଥା ଆପଣଙ୍କୁ ପୁତ୍ରୀରୂପରେ ପାଇବାକୁ ଚାହେଁ ।"

ମହାମାୟା 'ତଥାସ୍ତୁ' କହି ଅନ୍ତର୍ଦ୍ଧାନ ହୋଇଗଲେ । କାଳକ୍ରମେ ମେନା ଶତପୁତ୍ରର ଜନନୀ ହେବା ପରେ, ମହାମାୟା ତାଙ୍କ କୋଳରେ ଜନ୍ମଗ୍ରହଣ କଲେ । ମହାମାୟା ପ୍ରକଟ ହେବାମାତ୍ରେ ବିଶ୍ବବ୍ରହ୍ମାଣ୍ଡରେ ଆନନ୍ଦର ଉଚ୍ଛ୍ୱାସ ଖେଳିଗଲା । ଭଗବତୀ ଜଗଦମ୍ବାଙ୍କ ଦେହର ବର୍ଣ୍ଣ ଥିଲା—ଶରତ୍‌କାଳୀନ ନୀଳପଦ୍ମ ପରି । ତେଣୁ ପିତାମାତା ତାଙ୍କର ନାମ ଦେଲେ କାଳିକା । କେବଳ ସେହି ନାମରେ ନୁହେଁ । ତାରା, ଷୋଡ଼ଶୀ, ବଗଳା, ଭୁବନେଶ୍ବରୀ ଆଦି ବହୁ ନାମରେ ସେ ନାମିତା ହେଲେ । ପର୍ବତର ପୁତ୍ରୀ ହୋଇଥିବାରୁ ତାଙ୍କ ନାମ ପାର୍ବତୀ ହୋଇଥିଲା ଏବଂ ସେ ସେହି ନାମରେ ସର୍ବତ୍ର ପରିଚିତା ହେଲେ । ଶୁକ୍ଳପକ୍ଷର ଚନ୍ଦ୍ରକଳା ପରି ପାର୍ବତୀ ଅପରୂପ ସୌନ୍ଦର୍ଯ୍ୟ ଧାରଣ କରି ବଢ଼ିବାକୁ ଲାଗିଲେ । ଭଗବତୀଙ୍କର ବାଲ୍ୟଲୀଳା ଅତ୍ୟନ୍ତ ମଧୁମୟ ତଥା କୌତୂହଳୋଦ୍ଦୀପକ ଥିଲା । ଜଗଦମ୍ବା ସ୍ୱୟଂ ବାଳିକା ରୂପରେ ଜନ୍ମିଥିଲେହେଁ, ସାଧାରଣ କନ୍ୟା ପରି ସେ ଲୀଳା ଖେଳା କରିବାକୁ ଲାଗିଲେ । ଏହିପରି ଭାବରେ ପାର୍ବତୀଙ୍କର ବାଲ୍ୟକାଳ ବିତିଗଲା । ସେ ଯୌବନାବସ୍ଥାରେ ପଦାର୍ପଣ କରିବାମାତ୍ରେ ତାଙ୍କର ଲାବଣ୍ୟ ଶତଗୁଣିତ ହେବାକୁ ଲାଗିଲା । ଦେବନାରୀଗଣ ପାର୍ବତୀଙ୍କର ସୌନ୍ଦର୍ଯ୍ୟ ଦେଖି ମନେ ମନେ ଈର୍ଷା କରିବାକୁ ଲାଗିଲେ ।

ଏହି ସମୟରେ ଦିନେ ହରିନାମ କୀର୍ତ୍ତନ କରି ନାରଦ ଆସି ହିମାଳୟଙ୍କ ଗୃହରେ ଉପସ୍ଥିତ ହେଲେ । ପୁତ୍ରୀ ସହିତ ହିମାଳୟଦମ୍ପତି ନାରଦଙ୍କ ପାଦପୂଜା କରିବାକୁ ଲାଗିଲେ । ନାରଦ ପାର୍ବତୀଙ୍କ ସୁକୋମଳ ହାତଟିକୁ ଦେଖି କହିଲେ—"ଏ କନ୍ୟା ସର୍ବଲକ୍ଷଣ ପରିପୂର୍ଣ୍ଣା; କିନ୍ତୁ ଜଣେ ବୀତରାଗୀ, ନଗ୍ନ, ନିର୍ଗୁଣ, ନିରଞ୍ଜନ ଏହାର ପାଣି ଗ୍ରହଣ କରିବେ ।"

ଏହା ଶୁଣି ମେନା ଅତ୍ୟନ୍ତ ବିବ୍ରତା ହୋଇ ଉଠିଲେ । ଅପରୂପ ସୌନ୍ଦର୍ଯ୍ୟମୟୀ କନ୍ୟାର ପତି ଏଭଳି ଏକ ବ୍ୟକ୍ତି ହେବାର ଶୁଣି ସେ କାକୁତି ମିନତିଭରା ସ୍ୱରରେ କହିଲେ—"ମହର୍ଷି, ଆପଣ ଏହାର ପ୍ରତିକାର କରନ୍ତୁ; ଆମେ ପାର୍ବତୀ ପାଇଁ ସବୁ କିଛି କରିବାକୁ ପ୍ରସ୍ତୁତ ଅଛୁ ।"

"ଆପଣ ଗୋଟିଏ ଉପାୟ କରନ୍ତୁ । ଶିବଙ୍କ ସହିତ ଏହାର ବିବାହ କରାଇଦେଲେ, ସମସ୍ତ ଅରିଷ୍ଟ ମେଣ୍ଟିଯିବ" କହିଲେ ନାରଦ ।

"ଏହା କ'ଣ କେବେ ସମ୍ଭବ ?" ବିସ୍ମିତା ହୋଇ କହିଲେ ମେନା—"ଶିବଙ୍କ ପରି ଯୋଗିରାଜ ମୋ କନ୍ୟାର ପାଣିଗ୍ରହଣ କରିବେ କାହିଁକି ? ଆଉ ମଧ୍ୟ ଦାକ୍ଷାୟଣୀ ସତୀଙ୍କ ବ୍ୟତୀତ ସେ ଅନ୍ୟ କନ୍ୟାର ପାଣି ଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି । ସେପରି ପରିସ୍ଥିତିରେ ଆମର ଚେଷ୍ଟା ଆକାଶକୁସୁମ ପରି ବ୍ୟର୍ଥ ହେବ ।"

"ଗିରିରାଜ...!" କହିଲେ ମହର୍ଷି ନାରଦ—"ଆପଣ କ'ଣ ଭୁଲିଗଲେ କି ? ମହାମାୟା ଜଗଦମ୍ବିକା ଆପଣଙ୍କ କନ୍ୟା ରୂପେ ଜନ୍ମ ଗ୍ରହଣ କରିଛନ୍ତି । ଶିବଙ୍କ ବ୍ୟତୀତ ସେ ଆଉ ତାହାର ଭାର୍ଯ୍ୟା ହୋଇ ପାରିବେ ନାହିଁ । ଚେଷ୍ଟା ପାର୍ବତୀଙ୍କୁ ତପସ୍ୟାରେ ନିମଗ୍ନ କରାଅ । ସେ ତପସ୍ୟା ବଳରେ ଶିବଙ୍କୁ ଆକୃଷ୍ଟ କରି ପାରିବେ ।"

ନାରଦ ଏତିକ କହି ଚାଲିଯିବା ପରେ, ହିମାଳୟ ଓ ମେନା ପୂର୍ବଘଟଣା ସ୍ମରଣ କରି ଉଲ୍ଲସିତ ହେଲେ । ଏହାପରେ ଅନେକ ଦିନ ବିତିଗଲା । ଦିନେ ପାର୍ବତୀ ପିତାମାତାଙ୍କ ଆଗରେ କହିଲେ—"ମୁଁ ରାତିରେ ଗୋଟିଏ ସ୍ୱପ୍ନ ଦେଖିଛି । ଜଣେ ବୃଦ୍ଧ ବ୍ରାହ୍ମଣ ମୋ ନିକଟକୁ ଆସି ମୋତେ ଶିବପୂଜା କରିବା ଲାଗି ଉପଦେଶ ଦେଉଛନ୍ତି ।"

ହିମାଳୟ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"ମା', ମୁଁ ମଧ୍ୟ କାଲି ରାତିରେ ଠିକ୍ ସେହିପରି ଏକ ସ୍ୱପ୍ନ ଦେଖିଛି ।"

ସେହି ସମୟରେ ହିମାଳୟ ଅନୁଚରମାନଙ୍କଠାରୁ ଖବର ପାଇଲେ ଯେ, ସତୀ ବିରହରେ ଦୁଃଖିତ ହୋଇ ଶିବ ଅନତିଦୂରରେ ତପସ୍ୟା କରୁଛନ୍ତି । ଏହା ଶୁଣିବାମାତ୍ରେ ଗିରିରାଜ ଆନନ୍ଦରେ ଅଧୀର ହୋଇ ଉଠିଲେ । ସେ ସଙ୍ଗେ ସଙ୍ଗେ ନାନା ପ୍ରକାର ଉପହାର ନେଇ ଶିବଙ୍କ ତପୋ ଭୂମିରେ ଉପସ୍ଥିତ ହେଲେ । ହିମାଳୟଙ୍କୁ ଦେଖି କହିଲେ ଭୋଳାନାଥ—"ଗିରିରାଜ, ମୁଁ ବର୍ତ୍ତମାନ ଆପଣଙ୍କର ପ୍ରଜା ହୋଇ ଏହିଠାରେ ରହୁଛି । ଆପଣ ବେଳେବେଳେ ଆସିଲେ ମୁଁ ଅତ୍ୟନ୍ତ ଆନନ୍ଦିତ ହେବି ।"

ହିମାଳୟ ହାତ ଯୋଡ଼ି କହିଲେ—"ପ୍ରଭୋ, ବିଶ୍ୱବ୍ରହ୍ମାଣ୍ଡର ସକଳ ଜୀବ ଆପଣଙ୍କ ପ୍ରଜା । ନିଜ ଜୀବନ ଉତ୍ସର୍ଗ କରି ବିଶ୍ୱପତିଙ୍କର ଯଦି କିଛି ସେବା କରିବାର ସୁଯୋଗ ଲାଭ କରେ, ତାହାହିଁ ହେବ ମୋର ସୌଭାଗ୍ୟ ।"

ହିମାଳୟ ଆଉ କେତେ ସମୟ ସେଠାରେ ରହି ଶିବଙ୍କଠାରୁ ଅନୁମତି ନେଇ ସ୍ୱଭବନକୁ ଫେରି ଆସିଲେ । ସେ ପରଦିନ ପ୍ରିୟ କାଳିକାଙ୍କୁ ନେଇ ଶିବଙ୍କ ତପସ୍ୟା ସ୍ଥାନରେ ଉପଗତ ହେଲେ । ପାର୍ବତୀ ପିତାଙ୍କ ନିର୍ଦ୍ଦେଶରେ ଶିବଙ୍କ ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ କଲେ ।

ଭଗବାନ୍ ଭୂତନାଥ ନିଜର ଶକ୍ତିଙ୍କୁ ଦେଖି ମନେ ମନେ ଆନନ୍ଦିତ ହୋଇ ଉଠିଲେ । ଏହି ସମୟରେ କହିଲେ ଗିରିରାଜ ହିମାଳୟ—"ପ୍ରଭୋ, ଆପଣଙ୍କ ପାଦପଦ୍ମ ସେବାରେ ମନୋନିବେଶ କରିଛି ମୋର ଅଳିଅଳି କନ୍ୟା ପାର୍ବତୀ । ସେ ମୋ'ପକ୍ଷରୁ ଆଜିଠାରୁ ଆପଣଙ୍କ ସେବାରେ ନିଯୁକ୍ତ ରହିବ । ଆପଣ ଶିବଗଣମାନଙ୍କୁ କହିଦେବେ, ସେମାନେ ପାର୍ବତୀଙ୍କ ଆଗମନରେ ବାଧା ଦେବେନାହିଁ । ଏତିକି ଅନୁଗ୍ରହ କଲେ ମୁଁ ଧନ୍ୟ ହେବି ।"

ଶିବ ଗିରିରାଜଙ୍କ ଅଭିଳାଷକୁ ଆହୁରି ବଳବତ୍ତର କରାଇବା ଇଚ୍ଛାରେ କହିଲେ—"ଆପଣ ବୁଦ୍ଧିମାନ୍ ତଥା ବିଜ୍ଞ ବ୍ୟକ୍ତି ହୋଇ ଏପରି ଅମାର୍ଜିତଦୃଷ୍ଟି ଅନୁରୋଧ କରୁଛନ୍ତି କିପରି ? ମୁଁ ଜଣେ ତପସ୍ୱୀ ଏବଂ ଏହି ଆଶ୍ରମରେ ଏକାକୀ ରହୁଛି । ଆପଣଙ୍କ ଯୁବତୀ କନ୍ୟା କେବେ ଥରେ ଅଧେ ଆସି ମୋତେ ଦର୍ଶନ କରି ଯାଇପାରେ; କିନ୍ତୁ ମୋର ସେବାରେ ସର୍ବଦା ନିଯୁକ୍ତ ହେବାଲାଗି ମୁଁ କେବେହେଲେ ଅନୁମତି ଦେବନାହିଁ । ଏହା ଉଭୟଙ୍କ ପକ୍ଷରେ ଆତ୍ମଘାତୀ ନୀତି ହେବ ।"

ଶୈଳରାଜ ବିନୀତ ସ୍ୱରରେ କହିଲେ—"ପ୍ରଭୋ, ମୋ' କନ୍ୟା ସର୍ବଗୁଣସମ୍ପନ୍ନା ଏବଂ ସୁଶୀଳା ମଧ୍ୟ । ଆପଣ ତା'ଠାରେ କେଉଁ ଅବଗୁଣ ଦେଖି ଏ' ପ୍ରକାର କଠୋର ଆଦେଶ ପ୍ରଦାନ କରୁଛନ୍ତି ? ଆପଣ ତପସ୍ୱୀ, ଜିତେନ୍ଦ୍ରିୟ, ବିଶ୍ୱନାଥ, ଈଶ୍ୱର, ସର୍ବଶକ୍ତିମାନ ବିଶେଷତଃ ମୋର ଅତିଥି । ଆପଣଙ୍କ ଚରଣ ସେବାରେ ନିଯୁକ୍ତ ହେଲେ ମୋ' କନ୍ୟାର କଲ୍ୟାଣ ହେବ । ଆପଣ ଜଗତର ଆରାଧ୍ୟ । ତା'ପ୍ରତି ଅନୁଗ୍ରହ କଲେ ମୁଁ କୃତକୃତ୍ୟ ହେବି ।"

ଏହା ଶୁଣି ପୁଣି ସଦାଶିବ ଛଳନା କରି କହିଲେ—"ଗିରିରାଜ, ଆପଣଙ୍କ ଉକ୍ତି ଯଥାର୍ଥ । ଆପଣଙ୍କ କନ୍ୟା ସୁଶୀଳା, ସର୍ବଗୁଣସମ୍ପନ୍ନା ଓ ସାଧ୍ୱୀ ଏଥିରେ ସନ୍ଦେହ ନାହିଁ । ତଥାପି ମୁଁ ହେଉଛି—ମାୟାରହିତ ତପସ୍ୱୀ । ସ୍ତ୍ରୀ ପାଖରେ ରହିଲେ ତପସ୍ୟାରେ ବିଘ୍ନ ହୁଏ । ସ୍ତ୍ରୀ ସଂସର୍ଗ ଫଳରେ ଜ୍ଞାନ ବୈରାଗ୍ୟ ନଷ୍ଟ ହୋଇଯାଏ ଏବଂ ବ୍ୟକ୍ତି ସାଂସାରିକ ବନ୍ଧନରେ ବନ୍ଦୀ ହୋଇ ପଡ଼େ । ତେଣୁ ମୋକ୍ଷକାମୀ ଲୋକମାନେ ସ୍ତ୍ରୀଠାରୁ ଦୂରରେ ରହନ୍ତି । ସ୍ତ୍ରୀମାନଙ୍କ ସହିତ ଏକାନ୍ତରେ କଥାବାର୍ତ୍ତା କରିବା ସେମାନଙ୍କ ପକ୍ଷରେ ଅନୁଚିତ । ନିତାନ୍ତ ଆବଶ୍ୟକ ହେଲେ, ସେମାନେ ଅନ୍ୟ ସମ୍ମୁଖରେ ସ୍ତ୍ରୀମାନଙ୍କ ସହିତ କଥାବାର୍ତ୍ତା କରନ୍ତି । ପ୍ରକୃତିର ସଂସର୍ଗରେ ନାନାପ୍ରକାର ଅନର୍ଥ ସୃଷ୍ଟି ହୁଏ । ତେଣୁ ଆପଣ ଏହି ଅନୁଚିତ ପ୍ରସ୍ତାବ କରନ୍ତୁ ନାହିଁ ।"

ଶିବଙ୍କର ଉଦାସୀନତା ଲକ୍ଷ୍ୟ କରି ହିମାଳୟ ମନେ ମନେ ଅତ୍ୟନ୍ତ ଦୁଃଖିତ ହୋଇ ପାର୍ବତୀଙ୍କ ଆଡ଼କୁ ଚାହିଁଲେ । ପାର୍ବତୀ ଥିଲେ ଅତ୍ୟନ୍ତ ବିଦୁଷୀ । ସେ ପିଲାଦିନରୁ ସର୍ବଶାସ୍ତ୍ର ଅଧ୍ୟୟନ କରିଥିଲେ । ତେଣୁ ପିତାଙ୍କଠାରୁ ଅନୁମତି ନେଇ ସେ ଶିବଙ୍କ ସହିତ ଆଲୋଚନା କରିବାକୁ ଲାଗିଲେ । ସେ ପୁଣି ଥରେ ଶିବଙ୍କୁ ପ୍ରଣାମ କରି କହିଲେ—"ଆପଣ କ'ଣ ଘୋର ତପସ୍ୟା ଆରମ୍ଭ କରିବେ ?"

"ହିଁ..." ଉତ୍ତର ଦେଲେ ଶିବ—"ମୁଁ ମୋର ଶକ୍ତି ଅନୁସାରେ ତପସ୍ୟା କରିବି !"

ପାର୍ବତୀ ହସି ହସି କହିଲେ—"ଆପଣ ଯଦି ଶକ୍ତି ଅନୁସାରେ ତପସ୍ୟା କରିବେ; ତେବେ ସେହି ଶକ୍ତିର ସ୍ୱରୂପ କ'ଣ ? ପ୍ରକୃତିର ଅପର ନାମ ଶକ୍ତି ନୁହେଁ କି ? ଶକ୍ତିର

ସାହାଯ୍ୟ ନେଇ ବ୍ରହ୍ମା ସୃଷ୍ଟି କରୁଛନ୍ତି, ବିଷ୍ଣୁ ପାଳନ କରୁଛନ୍ତି ଏବଂ ଶିବ ମଧ୍ୟ ସଂହାର ଲୀଳା ଚଳାଇଛନ୍ତି । ଶକ୍ତି ବ୍ୟତିରେକେ କିଛି ହୋଇ ପାରିବ ନାହିଁ । ସମସ୍ତେ ପ୍ରକୃତିର ଅଧୀନ । ପ୍ରକୃତି ବିନା ମହେଶ୍ୱର କ'ଣ କରି ପାରିବେ ଯେ ? ସମସ୍ତେ ଯେତେବେଳେ ପ୍ରକୃତିର ଅଧୀନ, ଆପଣ ପ୍ରକୃତି ବିନା କି ତପସ୍ୟା କରିବେ ?"

ଏହା ଶୁଣି ହସି ହସି କହିଲେ ପଶୁପତି—"ମୁଁ ତପସ୍ୟା ବଳରେ ପ୍ରକୃତିର ବିନାଶ କରିଦେବି । ତେଣୁ ପ୍ରକୃତି ତା'ର ବିକୃତିରେ ମୋର କିଛି ଅନିଷ୍ଟ ଘଟାଇ ପାରିବ ନାହିଁ ।"

ପାର୍ବତୀ ସଙ୍ଗେ ସଙ୍ଗେ ଶିବଙ୍କୁ ଉତ୍ତର ଦେଇ କହିଲେ—"ଆପଣ ଯାହାକୁ ପ୍ରକୃତି ବୋଲି କହୁଛନ୍ତି ତାହା ସ୍ୱରୂପତଃ ପ୍ରକୃତି ନୁହେଁ । ସୂକ୍ଷ୍ମ ପ୍ରକୃତିର ସର୍ବବ୍ୟାପିନୀ ଶକ୍ତି ରହିତ ହେଲେ, ଆପଣଙ୍କୁ ପଚାରିବ କିଏ ଯେ ? ଆପଣ ଯାହା କିଛି କରୁଛନ୍ତି—ସବୁ କିଛି ପ୍ରକୃତିର ଅଧୀନ । କାରଣ ପ୍ରକୃତି ବଶରୁ ଆପଣ ସବୁ କିଛି କରିବାରେ ସମର୍ଥ ହେଉଛନ୍ତି । ଆପଣ ଯଦି କହିବେ, ମୁଁ ଜାଣି, ପ୍ରକୃତିର ବାହାରେ ମୋର ସ୍ଥିତି. ତେବେ ଆପଣଙ୍କ ତପସ୍ୟାର ଫଳ କ'ଣ ? ଆପଣ ଯଦି କହିବେ—ମୁଁ ସର୍ବସମର୍ଥ, ମୋ'ଠାରେ କୌଣସି ଭେଦଭାବ ନାହିଁ ଏବଂ ମୁଁ ସମତାର ପ୍ରତୀକ; ତେବେ ଆପଣଙ୍କ ମନରେ ସ୍ତ୍ରୀ ପୁରୁଷ ଏ'ଭାବ ଜାତ ହେଉଛି କିପରି ? ଆପଣ ଯଦି ନିର୍ବିକାର, ତେବେ ଅନ୍ୟକୁ ଭସ୍ମ କରୁଛନ୍ତି କାହିଁକି ?"

ସୂତ କହିଲେ—"ହେ ଶୌନକ, ମହାମାୟାଙ୍କ ଯୁକ୍ତି ଆଗରେ ଶିବ କ'ଣ କେବେ-ହେଲେ ଜିତି ପାରିବେ ? ତେଣୁ ସେ ହସି ହସି କହିଲେ—"ହେଉ, ତୁମେ ତୁମ ସଖୀମାନଙ୍କ ସହିତ ପ୍ରତିଦିନ ଆସି ମୋ ପୂଜା କରିପାର !"

ଏହା ଶୁଣି ଉଭୟ ହିମାଳୟ ଓ ପାର୍ବତୀ ଆନନ୍ଦିତ ହେଲେ । ସେ ପ୍ରତିଦିନ ସଖୀମାନଙ୍କ ସହିତ ଆସି ଶିବଙ୍କ ପାଦ ଧୋଇ ଦେଇ, ଗନ୍ଧପୁଷ୍ପରେ ଅର୍ଚ୍ଚନା କରିବା ସଙ୍ଗେ ସଙ୍ଗେ, ସେହି ସ୍ଥାନଟିକୁ ପରିଷ୍କାର କରିବାକୁ ଲାଗିଲେ । ପ୍ରତିଦିନ ପାର୍ବତୀ ନିତ୍ୟ-ସେବା କରିସାରି ଘରକୁ ଯାଉଥିଲେ ।

ଶିବ ପରମ ଯୋଗୀ ତଥା ନିର୍ବିକାର ପୁରୁଷ । ତାଙ୍କ ମନରେ ଆଦୌ ବିକାର ଜାତ ହେଲନାହିଁ । ପାର୍ବତୀ ମଧ୍ୟ ଯୋଗମାୟା । ସେ ଶିବଙ୍କ ଧ୍ୟାନରେ ସମସ୍ତ ଅତିବାହିତ କରି ବିଶୁଦ୍ଧ ଭାବରେ ପ୍ରତିଦିନ ଅର୍ଚ୍ଚନାରେ ଲାଗି ରହିଲେ । ସେ ମନେ ମନେ ଭାବୁଥିଲେ— "ଶିବ ମୋତେ ତାଙ୍କର ସହଚରୀ କରିବା ପର୍ଯ୍ୟନ୍ତ, ମୁଁ ଏହିପରି ଭାବରେ ତାଙ୍କରି ସେବାରେ ନିଯୁକ୍ତ ରହିବି ।'

ଏଣେ ଶିବ ଓ ଶିବା ନିର୍ବିକାର ଭାବରେ କାଳଯାପନ କଲେ; ତେଣେ ତାରକାସୁର ଜନ୍ମଗ୍ରହଣ କରି ନାନା ପ୍ରକାର ଉତ୍ପାତ ଆରମ୍ଭ କରିଦେଲା । ସେ ନିଜର ତପସ୍ୟା ପ୍ରଭାବରେ ଏତେ ଉଗ୍ର ହୋଇ ଉଠିଲା ଯେ, ତା'ର କେହି କିଛି ଅନିଷ୍ଟ କରିପାରିଲେ ନାହିଁ । ଦେବଗଣ ତାରକାସୁର ଭୟରେ ଭୀତତ୍ରସ୍ତ ହୋଇ ବ୍ରହ୍ମାଙ୍କଠାରେ ଶରଣ ପଶିଲେ । ଦେବଗଣଙ୍କ କାତର ପ୍ରାର୍ଥନାରେ ପ୍ରସନ୍ନ ହୋଇ କହିଲେ ପ୍ରଜାପତି—"ତାରକାସୁର ନିଜ ତପୋବଳରେ ବଳୀୟାନ୍ । ତାକୁ ବିଷ୍ଣୁ, ଶିବ କିମ୍ବା ମୁଁ କେହି ହେଲେ ସଂହାର କରି ପାରିବେ ନାହିଁ । ଶିବଙ୍କ ଔରସରୁ ଜାତ ପୁତ୍ର ହିଁ ତାକୁ ସଂହାର କରି ପାରିବ ।"

ବ୍ରହ୍ମାଙ୍କ ଶ୍ରୀମୁଖରୁ ଏହା ଶୁଣି କହିଲେ ଦେବଗଣ—"ଶିବ ନିର୍ବିକାର ଯୋଗୀ । ବିଶ୍ୱମୋହିନୀ ଯୋଗମାୟା ପ୍ରତିଦିନ ତାଙ୍କ ସେବାରେ ନିଯୁକ୍ତ ରହିଥିଲେହେଁ, ତାଙ୍କ ମନରେ ବିକାର ଜାତ ଦେଉନାହିଁ । ଏଭଳି ଊର୍ଦ୍ଧ୍ୱରେତା ଯୋଗୀଙ୍କଠାରୁ ପୁତ୍ରଜାତ ହେବ କିପରି ? ତଥାପି ଆମେମାନେ ଥରେ ମାତ୍ର ଚେଷ୍ଟା କରିବୁ । ଦେଖାଯାଉ, ଫଳ କ'ଣ ହେଉଛି ?"

ଏହା କହି ଦେବଗଣ ସେଠାରୁ ଯାଇ ଇନ୍ଦ୍ରଙ୍କ ପରାମର୍ଶ ଅନୁସାରେ ବସନ୍ତ, ମଳୟ ପବନ, ରତି ଓ କାମଦେବଙ୍କୁ ଶିବଙ୍କ ତପସ୍ୟା ଭଙ୍ଗ କରିବାକୁ ପଠାଇଲେ । କାମଦେବ ନିଜର ସମସ୍ତ ଶକ୍ତି ବ୍ୟୟ କରି ଶିବଙ୍କ ତପସ୍ୟା ଭଙ୍ଗ କରିବାକୁ ଇଚ୍ଛା କଲେତ, ନିଜେ ଶମ୍ଭୁଙ୍କ ତୃତୀୟ ନୟନର ଜ୍ୱାଳାରେ ଦଗ୍ଧ ହୋଇଗଲା ।

ଏହାପରେ ପଚାରିଲେ ଶୌନକ—"ହେ ସୂତ ମହର୍ଷି, ଆପଣ ଅତି ସଂକ୍ଷେପରେ ମଦନଦହନ ଉପାଖ୍ୟାନଟିକୁ ବଖାଣି ଦେଇଗଲେ । ଏଥିରେ ଆମର ଜିଜ୍ଞାସା ପୂରଣ ହେଲନାହିଁ । ଆପଣ ଏହି ଆଖ୍ୟାନଟିକୁ ବିସ୍ତୃତ ଭାବରେ କହନ୍ତୁ ।"

ଏହା ଶୁଣି କହିଲେ ସୂତ ମହର୍ଷି—"ହେ ମୁନିଗଣ, ଏହି ଆଖ୍ୟାନ ମୁଁ ପ୍ରଦ୍ୟୁମ୍ନଙ୍କ ଜନ୍ମପ୍ରକରଣରେ ଆପଣମାନଙ୍କୁ ବିସ୍ତୃତ ଭାବରେ ଶୁଣାଇବି । ଆଜି ଆପଣମାନେ କେବଳ ଏତିକି ଜାଣନ୍ତୁ ଯେ, ଶିବଙ୍କ ତୃତୀୟ ନେତ୍ରର ଅଗ୍ନିରେ କାମଦେବ ଭସ୍ମ ହୋଇଗଲା ।"

କାମଦେବ ଭସ୍ମ ହେଉଥିବା ସମୟରେ ପାର୍ବତୀ ସେହିଠାରେ ଉପସ୍ଥିତ ଥିଲେ । ସେ ଶିବଙ୍କର ଭୟଙ୍କର ସ୍ୱରୂପ ତଥା ତୃତୀୟ ନେତ୍ରରୁ ଅଗ୍ନି ନିର୍ଗତ ହେଉଥିବା ମୁହୂର୍ତ୍ତର ଘୋରନାଦ ଶୁଣି ଅତ୍ୟନ୍ତ ଭୟ କରି ପିତାଙ୍କ ଭବନକୁ ପଳାଇଗଲେ; କିନ୍ତୁ ଶିବପ୍ରାପ୍ତି ତାଙ୍କ ମନର ଏକମାତ୍ର ଅଭିଳାଷ ଥିବାରୁ, ସେ ହିମାଳୟଙ୍କ ଅନୁମତି ନେଇ ଘୋର ତପସ୍ୟାରେ ନିମଗ୍ନ ହେଲେ । ତାଙ୍କର ତପସ୍ୟାରୁ ଏପରି ଜ୍ୱାଳା ନିର୍ଗତ ହେଲା ଯେ, ସେଥିରେ ଜୀବଜଗତ୍ ସନ୍ତପ୍ତ ହେବାକୁ ଲାଗିଲେ । ଏହା ଦେଖି ଦେବଗଣ ପୁଣି ବ୍ରହ୍ମାଙ୍କ ଶ୍ରୀଚରଣରେ ଶରଣ ପଶି କହିଲେ—"ହେ ଭଗବନ୍, ଆପଣ ଆମମାନଙ୍କୁ ରକ୍ଷା କରନ୍ତୁ ।"

ଏହା ଶୁଣି ପ୍ରଜାପତି ଦେବଗଣଙ୍କୁ ସଙ୍ଗରେ ନେଇ ବିଷ୍ଣୁଙ୍କ ନିକଟରେ ପହଞ୍ଚିଲେ । ବିଷ୍ଣୁ ଦେବଗଣଙ୍କ କାତରତା ଲକ୍ଷ୍ୟ କରି କହିଲେ—"ତୁମେମାନେ ଭୟ କରନାହିଁ । ଏହି ଜ୍ୱାଳା ହେଉଛି ମହାମାୟାଙ୍କ ଯୋଗାଗ୍ନି । ତୁମେମାନେ ମିଳିତ ଭାବରେ ଶିବଙ୍କ ନିକଟକୁ ଯାଇ ପ୍ରାର୍ଥନା କର । ସେ ଶିବାଙ୍କୁ ବିବାହ କଲେ, ତୁମର ଦୁଃଖ ଦୂର ହୋଇଯିବ ।"

ଏହା ଶୁଣି ଦେବଗଣ କମ୍ପିତ ସ୍ୱରରେ କହିଲେ—"ପ୍ରଭୋ, ଆମେମାନେ ସେହି ରୁଦ୍ରଶଙ୍କରଙ୍କ ସମ୍ମୁଖୀନ ହୋଇ ପାରିବୁ ନାହିଁ । ସେ ଯେପରି ତୃତୀୟ ନେତ୍ରର ଅଗ୍ନିରେ କାମଦେବଙ୍କୁ ଭସ୍ମ କରିଦେଲେ, ଆମକୁ ଯଦି ଠିକ୍ ସେହିପରି ବ୍ୟବହାର କରିବେ, ତେବେ ସର୍ବନାଶ ହୋଇଯିବ । ଆମେମାନେ ଭୁଲ୍‌ରେ ସୁଦ୍ଧା ତାଙ୍କ ପାଖକୁ ଯିବୁନାହିଁ ।"

ଏହା ଶୁଣି ଭଗବାନ୍ ବିଷ୍ଣୁ ଟିକିଏ ହସି ଦେଇ କହିଲେ- "ଭଗବାନ୍ ଭୂତପତି ହେଉଛନ୍ତି ଭୋଳାନାଥ । ତାଙ୍କୁ ସ୍ତୁତି କରିବାମାତ୍ରେ ସେ ସନ୍ତୁଷ୍ଟ ହୋଇ ଯାଆନ୍ତି । ଚାଲ ମୁଁ ତୁମମାନଙ୍କ ସହିତ ଯାଉଛି ।"

ଭଗବାନ୍ ବିଷ୍ଣୁ ଦେବଗଣଙ୍କ ସହିତ ଶିବଙ୍କ ନିକଟରେ ପହଞ୍ଚିଗଲେ । ସାଧାରଣ ଶିଷ୍ଟାଚାର ପରେ କହିଲେ ବିଷ୍ଣୁ—"ଭଗବନ୍, ଆମେମାନେ ଆପଣଙ୍କ ବିବାହିତ ଜୀବନ ଦେଖିବାକୁ ଚାହୁଁ । ଆପଣ ଆମମାନଙ୍କୁ ସେହି ବରଦାନ ଦିଅନ୍ତୁ ।"

ଏହା ଶୁଣି କହିଲେ ଯୋଗିରାଜ—"ଭଗବନ୍, ଆପଣ ମୋତେ ସେ ଜଞ୍ଜାଳରେ ପକାଇବାକୁ କହନ୍ତୁ ନାହିଁ । ମୁଁ ଜାଣିଶୁଣି ଆପଣା ଗୋଡ଼ରେ ଲୁହାର ଶିକୁଳି ପିନ୍ଧିବାକୁ ଚାହୁଁନାହିଁ । ମୁଁ ମୋକ୍ଷ ମାର୍ଗରୁ ବିଚଳିତ ହେବନାହିଁ । ବିବାହ ହୋଇଯିବାମାତ୍ରେ ଯୋଗ, ଜପ, ଧ୍ୟାନ ସବୁ କୁଆଡ଼େ ଉଭେଇଯାଏ । କାନରେ ସ୍ତ୍ରୀର ନୂପୁରଧ୍ୱନି ବାଜିବା ମାତ୍ରେ ଜ୍ଞାନସିଦ୍ଧି କୁଆଡ଼େ ଭୁଲିଯାଏ । ବିବାହ ଫଳରେ ବ୍ୟକ୍ତି ସମ୍ପୂର୍ଣ୍ଣ ପରାଧୀନ ହୋଇଯାଏ । ଆପଣ ଜାଣିଶୁଣି ମୋତେ ଅତଳ ଗହ୍ୱରରେ ପକାଇବାକୁ ଚାହୁଁଛନ୍ତି କାହିଁକି ?"

ଭଗବାନ୍ ବିଷ୍ଣୁ ହସି ହସି କହିଲେ—"ଆପଣ ସଦାସର୍ବଦା ମୁକ୍ତ । ଆପଣଙ୍କୁ ପୁଣି କିଏ ବନ୍ଧନରେ ବାନ୍ଧି ପାରିବ ? କିନ୍ତୁ ଏହି ପ୍ରଲମ୍ବିତ ଜଟାଜୁଟ ଉପରେ ମୁକୁଟ ବେଶ୍ ଶୋଭା ପାଇବ । ଚନ୍ଦ୍ର ପରି ଶୋଭିତ ମସ୍ତକରେ ଫୁଲମାଳଗୁଡ଼ିକ ବେଶ୍ ଚମତ୍କାରପ୍ରଦ ହେବ ଏବଂ ଆମେମାନେ ତାହା ଦେଖି ଅତ୍ୟନ୍ତ ଆନନ୍ଦିତ ହେବୁ । ଆପଣ ନିଜ ପାଇଁ ନହେଲେ ମଧ୍ୟ ଶୈଳରାଜଙ୍କ ମୋଙ୍କ ପରିତୃପ୍ତି ତଥା ଆମମାନଙ୍କ ଆନନ୍ଦ ନିମିତ୍ତ ବିବାହ ପାଇଁ ରାଜି ହୋଇ ଯାଆନ୍ତୁ । ଆପଣଙ୍କୁ ପତିରୂପେ ପାଇବାପାଇଁ ବିଚାରୀ ପାର୍ବତୀ ବହୁ କଷ୍ଟସାଧ୍ୟ ତପସ୍ୟା କରୁଛନ୍ତି । ଆଉ ମଧ୍ୟ ଆପଣଙ୍କ ପୁତ୍ର ଦ୍ୱାରା ତାରକାସୁରର ନିଧନ ସମ୍ଭବ ହେବ । ଆପଣ ଦେବଗଣ ଶୈଳରାଜପୁତ୍ରୀ ପାର୍ବତୀଙ୍କ ପ୍ରତି ଅନୁଗ୍ରହ କରନ୍ତୁ । ତା' ବ୍ୟତୀତ ଦେଖନ୍ତୁ, ଆମେମାନେ ମଧ୍ୟ ବିବାହିତ ଜୀବନଯାପନ କରୁଛୁ ।"

"ଆପଣଙ୍କ ଲୀଳା ବୁଝିବ କିଏ ? ଆପଣ ବିବାହ କରି ମଧ୍ୟ ଅବିବାହିତ; କିନ୍ତୁ ମୋର ଇଚ୍ଛା ହେଉନାହିଁ ଗୋଟିଏ ଲଙ୍ଗୁଳ ଯୋଡ଼ିହୋଇ ମର୍କଟ ହେବାକୁ । ତଥାପି ଆପଣ ଯେତେବେଳେ ଗୃହୁଁଛନ୍ତି ମୋର ଆଉ କହିବାର କ'ଣ ଅଛି ? ଆପଣ ବ୍ୟବସ୍ଥା କରନ୍ତୁ ।"

ସୂତ କହିଲେ—"ହେ ମୁନିଗଣ, ଶିବଙ୍କ ସ୍ୱୀକୃତି ଲାଭ କରି ବ୍ରହ୍ମା, ବିଷ୍ଣୁ ତଥା ଅନ୍ୟାନ୍ୟ ଦେବଗଣ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସେମାନେ ପରମ ଉଲ୍ଲାସରେ ଶିବଙ୍କ ବିବାହର ଆୟୋଜନ କରିବାକୁ ଲାଗିଲେ ।"

## ଛପ୍ପୟ

"ମେନା ସେବା କରୀ ସୁତା ସମ ସତୀ ଦେହ ମେଂ ।
ପ୍ରକଟୀ ତନୟା ହୋୟ ମାତୁ ଗିରିରାଜ ଗେହ ମେଂ ।।
ଚନ୍ଦ୍ରକଳା ସମ ବଢ଼ତ ନିରଖି ପିତୁ ଅତି ହରଷାୟେ ।
ବିରହୀ ଶିବ ତପ ହେତୁ ପାସ ଗିରିକେ ଇତ ଆୟେ ।।
ସୁନତ ଶୈଲ ସେବା କରନ ସୁତା ସହିତ ଶିବ ସନ ଗୟେ ।
କନ୍ୟା କୁଁ କୈଙ୍କର୍ଯ୍ୟ ହିତ ଗିରି ଅରପି ହରଷିତ ଭୟେ ।।"



# ଶିବ-ପାର୍ବତୀ ବିବାହ

(୫୧୫)

"ତ୍ୱମେବ ଦୟିତଂ ଭୂୟ ଆବୃଙ୍କ୍ତେ ପତିମମ୍ବିକା ।
ଅନନ୍ୟଭାବୈକ ଗତିଂ ଶକ୍ତିଃ ସୁପ୍ତେବ ପୂରୁଷମ୍ ॥

(ଭାଗବତ ୪।୭।୫୯)

ଛପ୍ପୟ

"ଶିବ ଯୋଗୀ ନିଷ୍କାମ ବିକାର ନ ମନ ମହଁ ଆୱେଁ ।
ଇତ ତାରକ ଇକ ଅସୁର ପ୍ରକଟି ସବ ସୁର ନ ସତାୱେଁ ॥
ଶିବ ସୁତ ମାରେ ତାହି ସୁରନ ମିଲି ନିଶ୍ଚୟ କୀନ୍ହୋଂ ।
ଭେଜ୍ୟୋ ଶିବ ଢିଁଗ କାମ ଛାର ହରନେ କରି ଦୀନ୍ହୋଂ ॥
ଶିବ ହିତ ତପ ଗିରିଜା କରହିଁ, ତାପ ଯୁକ୍ତ ସବ ଜନ ଭୟୋ ।
ଆଶୁତୋଷ ସନ୍ତୁଷ୍ଟ ହ୍ୱୈ, ମନବାଞ୍ଛିତ ଫଲ ଦେ ଦୟୋ ॥

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଶ୍ରୀଜଗଦମ୍ବିକା ପୁନର୍ଜନ୍ମ ଲାଭ କରି ନିଜର ପୂର୍ବଜନ୍ମର ପତିଙ୍କୁ ଲାଭ କରିଥିଲେ । ଅନନ୍ୟ ଭାବରେ ଯେଉଁମାନେ ଭଜନ କରନ୍ତି, ଶିବ ତାଙ୍କୁ ପରମପଦ ଦେଇଥାଆନ୍ତି । ପ୍ରଳୟ କାଳରେ ଲୀନ ହୋଇଥିବା ଶକ୍ତି ଯେପରି ପ୍ରଳୟ ପରେ ନିଜ ପୁରୁଷର ଆଶ୍ରୟ ଗ୍ରହଣ କରେ, ଠିକ୍ ସେହିପରି ସତୀଦେବୀ ପାର୍ବତୀ ରୂପରେ ଜନ୍ମ ହୋଇ ମଧ୍ୟ ଶିବଙ୍କୁ ପତିରୂପେ ଲାଭ କରିଥିଲେ ।"

ଯେଉଁ ଦ୍ରବ୍ୟର ପ୍ରାପ୍ତି ନିମିତ୍ତ ଯେତିକି ଦୁଃଖ ଭୋଗ କରିବାକୁ ପଡ଼ିଥାଏ, ସେହି ଦ୍ରବ୍ୟର ପ୍ରାପ୍ତିରେ ମନ ମଧ୍ୟରେ ସେତିକି ଆନନ୍ଦ ଜାତ ହୋଇଥାଏ । ବିନା ଶ୍ରମରେ ଲବ୍ଧ ଦ୍ରବ୍ୟ ପ୍ରତି ମଣିଷ ମନରେ ସେତେ ଆନନ୍ଦ ବା ଉତ୍କଣ୍ଠା ଜାତ ହୋଇ ନଥାଏ । ବହୁକାଳ

ଆରାଧନା କରିବା ପରେ, ଆଶା ନିରାଶାର ଦୋଦୁଲ୍ୟମାନ ଅବସ୍ଥା ମଧ୍ୟରେ ଯେଉଁ ଶୁଭଫଳ ଲାଭ କରାଯାଏ, ତାହା ମନୁଷ୍ୟର ପ୍ରାଣରେ ଅପୂର୍ବ ପୁଲକ ଭରିଦିଏ । ସେଇଥିପାଇଁ ଆମର ଆର୍ଯ୍ୟ ମହର୍ଷିଗଣ ତପସ୍ୟାର ମହତ୍ତ୍ୱ ବିଶେଷ ଭାବରେ ବର୍ଣ୍ଣ ଦେଇଛନ୍ତି । ହେଉ ହେ ମାନବଗଣ, ମନକୁ ଇନ୍ଦ୍ରିୟର ବଶବର୍ତ୍ତୀ କରି ଚଞ୍ଚଳତାରେ ଜୀବନର ସ୍ରୋତକୁ ଛୁଟାଇ ଦିଅନାହିଁ । ପ୍ରତୀକ୍ଷାରେ ହିଁ ଆନନ୍ଦ ରହିଛି । ସାଧନା ପରେ ମନସାଧ ପୂରଣ ହେଲେ ତା'ର ସୁଫଳ ତୁମମାନଙ୍କ ମନକୁ ଦିବ୍ୟଭାବରେ ପୂର୍ଣ୍ଣ କରିଦେବ । ସେଇଥିପାଇଁ ଶିବ ଦୀର୍ଘକାଳ ପର୍ଯ୍ୟନ୍ତ ବିରହାଗ୍ନିରେ ସନ୍ତପ୍ତ ହୋଇଥିଲେ ଏବଂ ପାର୍ବତୀଙ୍କୁ ମଧ୍ୟ ବହୁକାଳ ପର୍ଯ୍ୟନ୍ତ ବିରହାଗ୍ନିରେ ସନ୍ତପ୍ତ କରାଇଥିଲେ । ସେ ପାର୍ବତୀଙ୍କ ମନରେ ଉତ୍କଣ୍ଠା ଜାତ କରାଇ ତା'ପରେ ତାଙ୍କୁ ବରଦାନ ଦେଇ ପତ୍ନୀରୂପେ ଗ୍ରହଣ କରିଥିଲେ ।

ଦେବଗଣ ଶିବଙ୍କଠାରୁ ସ୍ୱୀକୃତ ଲାଭ କରିଥିବା ଆଖ୍ୟାନ ଶୁଣିବା ପରେ ଶୌନକାଦି ମୁନିମାନେ ପଚାରିଲେ—"ହେ ସୂତ ମହୋଦୟ, ଶିବଙ୍କ ଆଖ୍ୟାନ ଅତ୍ୟନ୍ତ ଆନନ୍ଦପ୍ରଦ ତଥା ମନୋହର ଅଟେ । ବାସ୍ତବିକ୍ ତାଙ୍କର ମହିମା ବୁଝି ହୁଏନାହିଁ । ସେ ନିଜ ଭକ୍ତଙ୍କ ପାଇଁ ନିଜେ ବିରହାଗ୍ନିରେ ସନ୍ତପ୍ତ ହୋଇଥିଲେ । ଯେ ତାଙ୍କୁ ଯେଉଁ ଭାବରେ ଭଜନ କରେ, ସେ ସେହି ଭାବରେ ତାଙ୍କୁ ଫଳ ପ୍ରଦାନ କରନ୍ତି । କୌଣସି କାରଣରୁ ସେ ରୁଷ୍ଟ ହୋଇଗଲେ, କ୍ଷଣକ ମଧ୍ୟରେ ପୁଣି ତୁଷ୍ଟ ହୋଇ ଯାଆନ୍ତି । ତେଣୁ ଭକ୍ତମାନେ ତାଙ୍କୁ ଆଶୁତୋଷ ନାମରେ ନାମିତ କରିଛନ୍ତି । ଆପଣ ତାଙ୍କ ବିବାହ ଆଖ୍ୟାନ ଆମମାନଙ୍କୁ ବିସ୍ତୃତ ଭାବରେ ଶୁଣାନ୍ତୁ ।"

ସୂତ ମହର୍ଷି ଏହା ଶୁଣି କହିଲେ—"ହେ ଭଗବାନ୍, ଶିବଙ୍କ ଚରିତ କହିବା ପାଇଁ ମୋର ଏତେ ଶକ୍ତି କାହିଁ ? ମୁଁ ମୋର ସାଧ୍ୟ ଅନୁସାରେ ସେହି ପାବନ ଚରିତ ପ୍ରଖ୍ୟାପନ କରି, ମୋର ବାଣୀକୁ ପବିତ୍ର କରିବି ! ଦେବଗଣଙ୍କୁ ପ୍ରତିଶ୍ରୁତି ଦେଲେ ମଧ୍ୟ ହଠାତ୍ ଶିବ ପାର୍ବତୀଙ୍କୁ ବିବାହ କରିବା ଲାଗି ପ୍ରସ୍ତୁତ ହେଲେନାହିଁ । ସେ ସପ୍ତର୍ଷିଙ୍କୁ ଡାକି କହିଲେ—"ଆପଣମାନେ ଯାଇ ପାର୍ବତୀଙ୍କ ନିଷ୍ଠା ସମ୍ବନ୍ଧରେ ପରୀକ୍ଷା କରନ୍ତୁ ।"

ଶିବଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ସପ୍ତର୍ଷି ତପୋଭୂମିରେ ପ୍ରବେଶ କରି କଠୋର ତପସ୍ୟାରେ ମଗ୍ନ ପାର୍ବତୀଙ୍କୁ ପଚାରିଲେ—"ମାଆ ! ତୁମେ ଏଡ଼େ ସୁକୁମାରୀ ତଥା କୋମଳାଙ୍ଗୀ ହୋଇ ଏପରି କଠୋର ତପସ୍ୟାରେ ବ୍ରତୀ ହୋଇଛ କାହିଁକି ?"

ସେମାନଙ୍କ ପ୍ରଶ୍ନ ଶୁଣି ପାର୍ବତୀ ବିନୀତ ଭାବରେ କହିଲେ—"ମହର୍ଷିଗଣ, ମୁଁ ଆପଣମାନଙ୍କୁ ସ୍ୱାଗତ ଜଣାଉଛି । ମୁଁ ଗିରିରାଜଙ୍କ ପୁତ୍ରୀ । ସେଇଥିପାଇଁ ମୋ' ନାମ ପାର୍ବତୀ । ମୁଁ ନାରଦଙ୍କ ଉପଦେଶମତେ ଶିବଙ୍କୁ ସ୍ୱାମୀରୂପେ ପାଇବା ପାଇଁ ସଂକଳ୍ପ କରି, ଏ' ତପସ୍ୟା ଆରମ୍ଭ କରିଛି ।"

"ପୁତ୍ରି ! ତୁମେ ବାସ୍ତବିକ୍ ଅବୋଧ", କହିଲେ ସପ୍ତର୍ଷି—"ନାରଦ କୌତୁକରେ ତୁମକୁ ଏପରି କହିଛନ୍ତି । ନାରଦଙ୍କ କଥାରେ ତୁମେ ଏଡ଼େ ବଡ଼ ସଂକଳ୍ପ କଲ କିପରି ? ତୁମେ ତାଙ୍କୁ ଜାଣିନାହଁ; ସେ ତପସ୍ୟା ପ୍ରିୟ, ତେଣୁ ସମସ୍ତଙ୍କୁ କଠୋର ବ୍ରତରେ ବ୍ରତୀ କରାଇବା ତାଙ୍କର ଏକ କୌତୁହଳ । ତୁମକୁ ଏପରି ଗୋଟିଏ ଫାନ୍ଦରେ ପକାଇ ଦେଇ ଗଲେ ଯେ, ସାରା ଜୀବନ ତୁମେ ସେହି ଫାନ୍ଦରେ ପଡ଼ି ହନ୍ତସନ୍ତ ହେବ । କେବେହେଲେ ତୁମେ ଶିବଙ୍କୁ ପତିରୂପେ ପାଇ ପାରିବନାହିଁ । ତୁମେ ଭଲ ଭାବରେ ଜାଣିଛ, ଶିବ ହେଉଛନ୍ତି—ଯୋଗେଶ୍ୱର । ତାଙ୍କ ମନରେ କାମବାସନା କେବେହେଲେ ଜାଗ୍ରତ ହେବ ନାହିଁ । ଯେ ବିଶ୍ୱବିଜୟୀ କାମଦେବଙ୍କୁ ଭସ୍ମ କରି ଦେଲେ, ସେ କାହିଁକି ତୁମ ପ୍ରତି ଆକୃଷ୍ଟ ହେବେ ? ପ୍ରତ୍ୟେକ ବ୍ୟକ୍ତି ମନରେ ପ୍ରଥମେ କାମନା କରି ବିବାହ କରିଥାଏ । ଶିବଙ୍କ ମନକୁ କୌଣସି କାମନା ସ୍ପର୍ଶ କରି ପାରିନାହିଁ । ଯାହାଙ୍କର ଇହଲୋକ କିମ୍ବା ପରଲୋକର କାମନା କିଛି ହେଲେନାହିଁ । ସେ ବ୍ୟର୍ଥରେ କାହିଁକି ବିବାହ ବନ୍ଧନରେ ବନ୍ଦୀ ହେବେ ଯେ ? ସେ ଜୀବମାନଙ୍କର ମୁକ୍ତିଦାତା; ତେଣୁ କୌଣସିମତେ ସେ ବିବାହ ଜଞ୍ଜାଳରେ ପଡ଼ିବେ ନାହିଁ । ତୁମର ମନୋରଥ କେବେହେଲେ ପୂର୍ଣ୍ଣ ହେବନାହିଁ । ତେଣୁ ତୁମେ ତୁମର ମନୋରମ ଯୌବନାବସ୍ଥାକୁ ତପଃକ୍ଲେଶରେ ବିକୃତ କରନାହିଁ । ଆମେମାନେ ତୁମର ମଙ୍ଗଳ ପାଇଁ କହୁଛୁ ।"

ଏହା ଶୁଣି ଦୃଢ଼ତାର ସହିତ କହିଲେ ଶିବାନୀ—"ଯଦି ମୋର ମନୋରଥ ପୂର୍ଣ୍ଣ ନହୁଏ, ତେବେ ମୁଁ ତପସ୍ୟାରେ ମଗ୍ନ ରହି ଏ' ସୌନ୍ଦର୍ଯ୍ୟର ବିନାଶ ଘଟାଇ ଦେବି !"

ସପ୍ତର୍ଷିଗଣ ପାର୍ବତୀଙ୍କ ଦୃଢ଼ତାପୂର୍ଣ୍ଣ ଉତ୍ତର ଶୁଣି ହସି ହସି କହିଲେ—"ଏଥିରେ ତୁମକୁ ଲାଭ କ'ଣ ମିଳିବ ? ଏହା ବରଂ ହେବ ଆତ୍ମହତ୍ୟା ଏଭଳି ମହାପାପରେ ତୁମେ ମଗ୍ନ ହେବ କାହିଁକି ? ତୁମେ ବର୍ତ୍ତମାନ ଅବୋଧ ବାଳିକା, ହିତାହିତ ଜ୍ଞାନ ତୁମର ହୋଇ-ନାହିଁ । ନାରଦଙ୍କ ଦାୟିତ୍ୱହୀନ ପରିହାସରେ ପଡ଼ି ତୁମେ ନିଜ ସୌନ୍ଦର୍ଯ୍ୟକୁ ନଷ୍ଟ କରୁଛ କାହିଁକି ? ମାଆ ! ତୁମେ ଆମ କଥା ମାନି ଏ କଠୋର ବ୍ରତ ତ୍ୟାଗ କରିଦିଅ । ମନେକର, ଶିବ ତୁମକୁ ବିବାହ କରିବେ; କିନ୍ତୁ ସେଥିରେ ତୁମେ କି ସୁଖ ପାଇବ ଯେ ? ସେ ଦିଗମ୍ବର, ତାଙ୍କର ଘରଦ୍ୱାର ବୋଲି କିଛି ନାହିଁ । ତୁମେ ବିବାହିତ ଜୀବନ ଅତିବାହିତ କରିବ ଗିରିଗହ୍ୱର ମଧ୍ୟରେ । ଶିବଙ୍କର ବିମାନ ନାହିଁ କିମ୍ବା ଗୋଟିଏ ସୁନ୍ଦର ବାହନ ମଧ୍ୟ ନାହିଁ । ଗୋଟିଏ ବୁଢ଼ା ଷଣ୍ଢ ଉପରେ ବସି ସେ ଯିବାଆସିବା କରନ୍ତି । ତୁମେ ଜାଣ, ଷଣ୍ଢ ଉପରେ ବସିବା ମହାପାପ ! ଶିବଙ୍କର ମାତା ପିତା କେହି ନାହାନ୍ତି । ତାଙ୍କର କୁଳଗୋତ୍ର ମଧ୍ୟ କାହାରିକୁ ଜଣା ନାହିଁ । ଏପରି ଗୋଟିଏ ଅପାତ୍ରକୁ ତୁମେ ବରଣ କରିବାକୁ ଇଚ୍ଛା କରୁଛ କାହିଁକି ? ଶିବ ସର୍ବଦା ଗଞ୍ଜେଇ, ଭାଙ୍ଗ ଆଦି ନିଶାରେ ବିଭୋର ହୋଇ ରହନ୍ତି । ସଦାସର୍ବଦା ତପସ୍ୟାରେ ମଗ୍ନ ରହିବା ତାଙ୍କର ଚିରାଚରିତ ଅଭ୍ୟାସ । ତାଙ୍କର ବେଶ ପୋଷାକ ବୋଲି

କିଛୁ ହେଲେ ନାହିଁ । ପ୍ରାୟ ଅଧିକାଂଶ ସମୟ ଉଲଗ୍ନ ରହି ସେ ସମସ୍ତ ଅନ୍ତବାହିତ କରନ୍ତି । ଯେତେବେଳେ ଅବା ଲୋକଲଜ୍ଜାକୁ ଡରି ପରିଧାନ କରନ୍ତି, ତାହା ମଧ୍ୟ ବ୍ୟାଘ୍ରଚର୍ମ କିମ୍ବା ହସ୍ତିଚର୍ମ । ସେ ଶରୀରରେ ଚିତାଭସ୍ମ ବୋଳି ହୋଇ ଏବଂ ଗଳାରେ ମୁଣ୍ଡମାଳା ଧାରଣ କରିଥାଆନ୍ତି । କଣ୍ଠରେ ସର୍ପର ମୁକୁଟ, ବାହୁରେ ସର୍ପର ବାଜୁବାନ୍ଧ ଏବଂ ସର୍ବାଙ୍ଗରେ ସର୍ପଭୂଷଣ ! ଏଭଳି ଏକ ଭୟଙ୍କର ରୂପବାନ୍ ସ୍ୱାମୀ ପାଇ ତୁମ ପରି କୋମଳାଙ୍ଗୀ ତଥା ଅଲୌକିକ ସୁନ୍ଦରୀ କ'ଣ କେବେହେଲେ ଜୀବନରେ ସୁଖୀ ହୋଇ ପାରିବ ? ଆମ କଥା ମାନି ତୁମେ ସେପରି ଦୁରାଗ୍ରହ ତ୍ୟାଗକର ।"

ପାର୍ବତୀ ସପ୍ତର୍ଷିମାନଙ୍କ ଉପଦେଶକୁ ଉପେକ୍ଷା କରି ଦୃଢ଼ସ୍ୱରରେ କହିଲେ— "ଆପଣମାନେ ଯାହା ଇଚ୍ଛା ତାହା ମନେକରନ୍ତୁ ନା କାହିଁକି, ମୋର ଧାରଣା ଅଟଳ । ମୋତେ ଏହି ମାର୍ଗରୁ କେହି ବିଚ୍ୟୁତ କରି ପାରିବେ ନାହିଁ । ଆଉ ମଧ୍ୟ ଆପଣମାନେ ଜାଣିଥିବେ, ପ୍ରେମ ଗୋଟିଏ ଅଦ୍ଭୁତ ରୋଗ । ଥରେ ଯେ ଏହି ରୋଗରେ ଆକ୍ରାନ୍ତ ହୁଏ, ତାହା କବଳରୁ କେବେହେଲେ ମୁକ୍ତ ହୋଇ ପାରେନାହିଁ । ପ୍ରେମିକା କେବେହେଲେ ପ୍ରିୟର ଅବଗୁଣ ଦେଖେନାହିଁ । ଆପଣମାନଙ୍କ ଦୃଷ୍ଟିରେ ଯାହା ଯାହା ଶିବଙ୍କର ଅବଗୁଣ ତାହା ମୋଦୃଷ୍ଟିରେ ପରମପାବନ ତଥା ଅଲୌକିକ ସୌନ୍ଦର୍ଯ୍ୟ । ତେଣୁ ଏହା ମୋର ଅବୋଧତା କିମ୍ବା ଦୁର୍ଭାଗ୍ୟ, ଯାହା କିଛି ଭାବନ୍ତୁନା କାହିଁକି, ମୁଁ ମୋର ଚଲାପଥରୁ ଟଳେହେଲେ ଘୁଞ୍ଚିବ ନାହିଁ ! ତା'ବ୍ୟତୀତ ମୋ ପକ୍ଷରେ ଅନ୍ୟ ଉପାୟ ମଧ୍ୟ ନାହିଁ !"

"ଉପାୟ ନାହିଁ କାହିଁକି ?" କହିଲେ ଋଷିବୃନ୍ଦ—"ଆମେ ପ୍ରକୃତ ଉପାୟ ବତାଇ ଦେଉଛୁ । ତୁମେ ମନରୁ ଶିବଙ୍କୁ ବିବାହ କରିବାର ବାସନା ତ୍ୟାଗ କରି ଜଗନ୍ନାଥ ବିଷ୍ଣୁଙ୍କୁ ପତିରୂପେ ପାଇବା ଲାଗି କାମନା କର । ତ୍ରିଲୋକସୁନ୍ଦର, କମନୀୟ କାନ୍ତି ବିଷ୍ଣୁଙ୍କୁ ପତିରୂପେ ପାଇଲେ ତୁମେ ସବୁଦିଗରୁ ସୁଖୀ ହେବ । ଶିବଙ୍କର ପଞ୍ଚମୁଖ, ବିକୃତ ଭୂଷଣ ଓ ଜରାଜୀର୍ଣ୍ଣ ବାହନ ତୁଳନାରେ ଗୋଲୋକପତି କେତେ ଯୋଗ୍ୟ ବର; ତାହା ତୁମ ପରି ବୁଦ୍ଧିମତୀ କନ୍ୟା ନିଶ୍ଚୟ ବୁଝିପାରିବ । ବିଷ୍ଣୁଙ୍କର ଅଙ୍ଗଶୋଭା କେତେ ମନୋହର ତଥା ଲୋଭନୀୟ ତାହା ତୁମକୁ ଅଧିକ ବୁଝାଇବାକୁ ପଡ଼ିବ ନାହିଁ ।"

"କେବଳ ସୌନ୍ଦର୍ଯ୍ୟ ନୁହେଁ, ଧନରେ ମଧ୍ୟ ବିଷ୍ଣୁଙ୍କର ତୁଳନା ନାହିଁ । ସ୍ୱୟଂ ଧନେଶ୍ୱରୀ ଲକ୍ଷ୍ମୀ ତାଙ୍କ ପାଦରେ ଲୋଟୁଛନ୍ତି । ତୁମେ ଅବଶ୍ୟ ଭାବିପାର ଯେ, ଲକ୍ଷ୍ମୀ ତୁମକୁ ଈର୍ଷା କରି ସୁଖରେ ରଖାଇ ଦେବେନାହିଁ । ସେ କଥା ଆଦୌ ଚିନ୍ତା କରନାହିଁ । ସ୍ୱୟଂ ଲକ୍ଷ୍ମୀ ତୁମ ଦାସୀ ହୋଇ ରହିବେ । ଗରୁଡ଼ ପରି ବେଗବାନ୍ ଯାନରେ ବସି ତୁମେ କ୍ଷଣକରେ ବ୍ରହ୍ମାଣ୍ଡ ବୁଲି ଆସି ପାରିବ । ଏଭଳି ଐଶ୍ୱର୍ଯ୍ୟମାନ୍ ସୁରେଶ୍ୱର ବିଷ୍ଣୁଙ୍କୁ ଛାଡ଼ି ତୁମେ ଶିବଙ୍କ ପାଇଁ ଏତେ କଷ୍ଟ ପାଉଛ ?"

"ସପ୍ତର୍ଷିଗଣ", କହିଲେ ଗିରିରାଜସୁତା—"ଯାହାକୁ ଯେଉଁ ବସ୍ତୁ ଭଲ ଲାଗେ, ସେ ତାହାକୁ ଯେ କୌଣସିମତେ ପାଇବାକୁ ଇଚ୍ଛା କରେ । ସେଥିଲାଗି ସେ ତାହାର ବାରଣ ମାନେ ନାହିଁ କିମ୍ବା ତାହାର ଉପଦେଶ ପ୍ରତି କର୍ଣ୍ଣପାତ କରେନାହିଁ । ଚାତକ ସ୍ୱାତୀ ବିନ୍ଦୁଟିକୁ ଚାହିଁ ରହିଥାଏ । ଏପରିକି, ଗଙ୍ଗାଜଳ କିମ୍ବା ଅନ୍ୟ କୌଣସି ତୀର୍ଥଜଳ ତାକୁ ସ୍ୱାଦ ଲାଗେ ନାହିଁ । କୁମୁଦିନୀ ଚନ୍ଦ୍ରଙ୍କୁ ଦେଖିଲେ ଉଲ୍ଲସିତା ହୁଏ । ସୂର୍ଯ୍ୟଙ୍କର ସହସ୍ର କିରଣ ପ୍ରତି ସେ ଭୁଲିରେ ସୁଦ୍ଧା ଚାହେଁନାହିଁ । ମୁଁ ମଦନଦହନକାରୀ ଶିବଙ୍କୁ ମୋ ମନମନ୍ଦିରରେ ସ୍ଥାପନ କରି ହୃଦୟର ଅର୍ଘ୍ୟ ତାଙ୍କ ପାଦପଦ୍ମରେ ଅର୍ପଣ କରି ସାରିଛି । ମୁଁ ବିଷ୍ଣୁଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ ଜଣାଉଛି; କିନ୍ତୁ ଶିବଙ୍କ ବ୍ୟତୀତ ମୁଁ ଆଉ କାହାରିକୁ ସ୍ୱାମୀ ଭାବରେ ପାଇବାକୁ ଚାହେଁନାହିଁ । ଆପଣ ଶିବଙ୍କ ବିପକ୍ଷରେ ଗୋଟିଏ ହେଲେ ଶବ୍ଦ ପ୍ରକାଶ କରନ୍ତୁ ନାହିଁ । ମୋର ମନ ଅଟଳ, ତାହା କୌଣସି ଭୁଲାଣିଆ କଥାରେ ଭୁଲିବାର ନୁହେଁ ।"

ପାର୍ବତୀଙ୍କ ମନର ଦୃଢ଼ତା ଲକ୍ଷ୍ୟ କରି କହିଲେ ସପ୍ତର୍ଷିଗଣ –"ଦେବି ! ତୁମେ ଧନ୍ୟ । ତୁମର ଏ ନିଷ୍ଠା ଅତ୍ୟନ୍ତ ଶ୍ଳାଘ୍ୟ । ଶିବଙ୍କ ପ୍ରତି ତୁମର ଅନୁରାଗ ଅନୁକରଣୀୟ । ଆମେ ଆଶୀର୍ବାଦ ଦେଉଛୁ, ତୁମେ ଯୋଗିରାଜ ଶିବଙ୍କୁ ପତିରୂପେ ଅଚିରେ ଲାଭକର !"

ଏତିକି କହି ସପ୍ତର୍ଷିଗଣ ସେଠାରୁ ଚାଲିଗଲେ । ତା'ପରେ ଜଗଦମ୍ବା ପାର୍ବତୀ ତପସ୍ୟାରେ ନିମଗ୍ନା ହୋଇ ପଡ଼ିଲେ । ସପ୍ତର୍ଷିଙ୍କ ମୁଖରୁ ପାର୍ବତୀଙ୍କର ସମ୍ବାଦ ପାଇ ଶିବ ଆନନ୍ଦିତ ହୋଇଥିଲେ । ସେ ସେତିକିରେ ସନ୍ତୁଷ୍ଟ ନହୋଇ ନିଜେ ବ୍ରାହ୍ମଣ ବଟୁବେଶ ଧାରଣ କରି, ପାର୍ବତୀଙ୍କୁ ପରୀକ୍ଷା କରିବା ଛଳରେ ତାଙ୍କ ତପସ୍ୟା ସ୍ଥାନରେ ଉପସ୍ଥିତ ହେଲେ ।

ଜଣେ ବ୍ରାହ୍ମଣଙ୍କୁ ଆସୁଥିବାର ଦେଖି ପାର୍ବତୀ ଠିଆ ହୋଇ ପାଦ୍ୟ ଅଭ୍ୟର୍ଥନା ଜଣାଇଲେ । ପାର୍ବତୀ ବଟୁଙ୍କ ଜିଜ୍ଞାସାମତେ ନିଜ ତପସ୍ୟାର ଉଦ୍ଦେଶ୍ୟ ତଥା ସପ୍ତର୍ଷିମାନଙ୍କ ସହିତ ତାଙ୍କର ଆଲୋଚନା ସମ୍ପର୍କରେ ଗୋଟି ଗୋଟି କରି ସବୁକଥା କହିଗଲେ । ତାହା ଶୁଣି ବଟୁବେଶଧାରୀ ଶିବ ହସି ଦେଲେ । ଏହା ଦେଖି ପାର୍ବତୀ ପଚାରିଲେ– "ମହାଶୟ, ଆପଣ ହସିଲେ କାହିଁକି ?"

ପାର୍ବତୀଙ୍କ ପ୍ରଶ୍ନ ଶୁଣି ଛଦ୍ମବେଶଧାରୀ ଶିବ କହିଲେ—"ଦେବି ! ମୁଁ ତୁମର ନିର୍ବୋଧତା ଲକ୍ଷ୍ୟ କରି ହସିଲି । ତୁମେ ଶୈଳାଧିରାଜତନୟା ଅଥଚ ତୁମର ଟିକିଏ ହେଲେ ବୁଦ୍ଧି ନାହିଁ । ତୁମେ ଜଣେ ଜାତିଗୋତ୍ର ନଥିବା ବ୍ୟକ୍ତିକୁ ପାଇବା ପାଇଁ ଏଡ଼େ ବଡ଼ କଠୋର ତପସ୍ୟା କରୁଛ ? ଶିବଙ୍କର କେଉଁ ଗୁଣ ଦେଖି ତୁମେ ତାଙ୍କ ପ୍ରତି ଆକୃଷ୍ଟ ହୋଇଛ ? ଶିବ ଦିଗମ୍ବର, ଗୁଣହୀନ, ପରିବାର ହୀନ ଏବଂ ଧର୍ମାଚାରହୀନ ମଧ୍ୟ । ତୁମେ ସ୍ତ୍ରୀକୁଳର ଭୂଷଣ ପରମ ସୁନ୍ଦରୀ । ଆଉ ମଧ୍ୟ ତୁମେ ସାଧାରଣ ଲୋକର କନ୍ୟା ନୁହଁ । ସ୍ୱୟଂ

ପର୍ବତରାଜଙ୍କ ପୁତ୍ରୀ । ତୁମ ପିତା ଯୋଗ୍ୟବର ଅନୁସନ୍ଧାନ କରି ତୁମକୁ ବିବାହ ଦେଇ ପାରିବେ ! ବ୍ରହ୍ମାଣ୍ଡରେ ବହୁ ସୁନ୍ଦର ଦେବତା ଅଛନ୍ତି । ତୁମେ ସେମାନଙ୍କୁ ଛାଡ଼ି ଶିବପ୍ରାପ୍ତି ଆଶାରେ କଠୋର ତପଃ ସାଧନ କରୁଛ ! ସାଧାରଣ ବୁଦ୍ଧିହୀନ ଲୋକଙ୍କ ପରି ତୁମର ନିର୍ବୋଧତା ଦେଖି ଯେ କୌଣସି ଲୋକ ମନରେ ହାସ୍ୟ ଉଦ୍ରେକ ହେବ । ସଂସାରରେ କେହି ଭଲକୁ ଛାଡ଼ି ଖରାପକୁ ପାଇବା ପାଇଁ ଚାହେଁନାହିଁ । ମୋ' ଉପଦେଶ ମାନି ତୁମେ ତପସ୍ୟା ତ୍ୟାଗ କରି ଘରକୁ ଫେରିଯାଅ ।"

ଭଗବତୀ ପାର୍ବତୀ ମନେ ମନେ ବିରକ୍ତ ହୋଇ ପଚାରିଲେ—"ବଟୁ ! ଆପଣ କ'ଣ ଶିବଙ୍କୁ ଭଲ ଭାବରେ ଜାଣନ୍ତି ? ମୋର ଧାରଣା ହେଉଛି, ଆପଣ ଶିବଙ୍କୁ ଆଦୌ ଚିହ୍ନି ନାହାନ୍ତି କିମ୍ବା ତାଙ୍କ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ତେଣୁ ଆପଣ ମୋର ଆଚରଣକୁ ଅନୁଚିତ ବୋଲି କହୁଛନ୍ତି ।"

ଏହା ଶୁଣି କହିଲେ ବଟୁବେଶଧାରୀ ଯୋଗିରାଜ ଶିବ—"ଦେବି ! ମୁଁ ଶିବଙ୍କୁ ଭଲ ଭାବରେ ଜାଣେ । ମୁଁ ତାଙ୍କୁ ଯେପରି ଭାବରେ ଜାଣେ, ତୁମେ ତାଙ୍କୁ ଆଦୌ ସେପରି ଭାବରେ ଜାଣିନାହଁ, ତୁମକୁ କେହି ଜଣେ ଧୂର୍ତ୍ତ ନିଜ ଚତୁରତାରେ ଭୁଲାଇ ଦେଇଛି । ତୁମେ ନିଜେ ଚିନ୍ତାକର; ଶିବ ଅନାଦି ପୁରୁଷ ବୃଦ୍ଧ, ପଞ୍ଚମୁଖ, କୁଳହୀନ, ଗଜଚର୍ମଧାରୀ, ଭୂତପତି ତଥା ଶ୍ମଶାନବାସୀ । ତୁମେ ଅନିନ୍ଦ୍ୟସୁନ୍ଦରୀ, ରାଜକନ୍ୟା, ଶୀଳବତୀ, ଆଚାରଶୀଳା, ପତିବ୍ରତା । ତୁମ ସହିତ ଶିବଙ୍କର ବିବାହ ସମ୍ବନ୍ଧ ଲୋକଲୋଚନକୁ ଆଦୌ ସୁନ୍ଦର ଦେଖାଯିବନାହିଁ । ସେହି କାରଣରୁ ତୁମ ପୂର୍ବଜନ୍ମର ପିତା ଦକ୍ଷ ତୁମକୁ ତ୍ୟାଗ କରିଥିଲେ । ଶିବ ଅମଙ୍ଗଳର ସ୍ରଷ୍ଟା । ତା'ବ୍ୟତୀତ ସେ ଗୋଟିଏ ଜରାଜୀର୍ଣ୍ଣ ଷଣ୍ଢ ଉପରେ ବସି ଭୂତପ୍ରେତଗଣଙ୍କ ସହିତ ଦ୍ୱାର ଦ୍ୱାର ଭିକ୍ଷାମାଗି ଖର୍ପରରେ ଭୋଜନ କରନ୍ତି । ତୁମେ ରାଜରାଜେଶ୍ୱରଙ୍କର ସ୍ନେହ-ପାଳିତା କନ୍ୟା ଏବଂ ସୁଖ ସମୃଦ୍ଧିରେ ପରିବର୍ଦ୍ଧିତା । ସେପରି-ସ୍ଥଳେ ତୁମେ ଶିବଙ୍କୁ ବିବାହ କରିବାକୁ କିପରି ଆଗ୍ରହ ପ୍ରକାଶ କରୁଛ ? ଏଭଳି ଆଗ୍ରହ ତ୍ୟାଗ କରି ଘରକୁ ଫେରିଯାଅ । ତୁମପାଇଁ ଯୋଗ୍ୟବର ଅନେକ ମିଳିବେ ।"

ଶିବଙ୍କ ନିନ୍ଦା ଶୁଣି ପାର୍ବତୀ କ୍ରୋଧରେ ହିତାହିତ ଜ୍ଞାନ ଭୁଲି ଗଲେ । ସେ ସାଧାରଣ ଶିଷ୍ଟତା ତ୍ୟାଗ କରି କହିଲେ—"ତୁ ଗୋଟିଏ ଛଦ୍ମବେଶଧାରୀ ଶିବଙ୍କ ନିନ୍ଦୁକ । ଦମ୍ଭ, ଅହଙ୍କାର ତୋ'ଠାରେ ପୂରି ରହିଛି । ତୁ କପଟବେଶରେ ଆସି ମୋତେ ମୋର ଆରାଧ୍ୟଙ୍କଠାରୁ ବିଚ୍ଛିନ୍ନ କରାଇବାକୁ ବସିଛୁ । ତୁ ଶିବଙ୍କର ବିଭୂତି ସମ୍ବନ୍ଧରେ କ'ଣ ଜାଣୁ ? ଯେ ବିଶ୍ୱବ୍ରହ୍ମାଣ୍ଡର ପତି, ତାଙ୍କର ଭଲମନ୍ଦ ତୁ ବିଚାର କରିବାକୁ ବାବଦୂକ ସାଜିଛୁ ?"

ବଟୁ ଧୈର୍ଯ୍ୟର ସହିତ କହିଲେ—"ଦେବି, ତୁମେ କ୍ରୁଦ୍ଧ ହୁଅନାହିଁ । ବାଳିକା ସୁଲଭ ଚପଳତାର ବଶବର୍ତ୍ତୀ ହୋଇ ତୁମେ ମୋତେ ଅପମାନିତ କରିବାକୁ ବସିଛ । ମୁଁ

ତୁମର ମଙ୍ଗଳ ପାଇଁ ଏପରି କହୁଛି । ଦେଖ, ବରକନ୍ୟାଙ୍କ ମଧ୍ୟରେ ରୂପ, ଗୁଣ, ବୟସ, ଧନ ସମ୍ପତ୍ତିର ସାମ୍ୟ ନ ରହିଲେ, ଦାମ୍ପତ୍ୟ ଜୀବନ ସୁଖମୟ ହୁଏନାହିଁ । ଶିବ ଓ ତୁମ ମଧ୍ୟରେ ସବୁଯାକ ଅସାମଞ୍ଜସ୍ୟ ପୁରି ରହିଛି । ତୁମର ସୁନ୍ଦର ଚକୁର ଆଗରେ ଶିବଙ୍କର ରୁକ୍ଷଜଟାଜୁଟ ଆଦୌ ଶୋଭା ପାଇବ ନାହିଁ । ସେଥିରେ ପୁଣି ଭୀଷଣାକାର ପାଞ୍ଚୋଟି ମୁଣ୍ଡ ଏବଂ ପ୍ରତ୍ୟେକ ମୁଣ୍ଡରେ ତିନୋଟି ଲେଖାଏଁ ନେତ୍ର । ଶିବଙ୍କ ଜଟାଜୁଟ ସର୍ବଦା ଗଙ୍ଗାଜଳରେ ଆର୍ଦ୍ର । ପୁଣି ସେଥିରୁ ବୀରଭଦ୍ର ପରି ଭୀଷଣାକାର ବ୍ୟକ୍ତି ଜନ୍ମ ହୋଇ ପାରୁଛନ୍ତି । ତୁମ ମସ୍ତକର ଅଳକାବଳୀ କେଡ଼େ ସୁନ୍ଦର ଏବଂ ସୁଗନ୍ଧି ପୁଷ୍ପଯୁକ୍ତ ବେଣୀ ମଧ୍ୟ କେଡ଼େ ମନମୋହକ, ଶିବଙ୍କ ରୁକ୍ଷ ଜଟାରେ ଗୋଟିଏ ଚନ୍ଦ୍ରମା ବନ୍ଦୀ ହୋଇ ଚିରକାଳ ବାସ କରିଛି । ତା'ପରେ ତାହା ଶ୍ମଶାନ ଗନ୍ଧରେ ଦୂଷିତ । ଶରୀରରେ ତାଙ୍କର ରୁଣ୍ଡମୁଣ୍ଡର ଦୁର୍ଗନ୍ଧ; ତୁମେ ମୁହୂର୍ତ୍ତିଟିଏ ମଧ୍ୟ ତାହା ସହ୍ୟ କରି ପାରିବ ନାହିଁ । ତୁମେ କୋମଳାଙ୍ଗୀ, ସୁକୁମାରୀ ଏବଂ ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତିମା; କିନ୍ତୁ ଶିବ ମହାଭୟଙ୍କର ସଂହାରର ଦେବତା । ତାଙ୍କର କ୍ରୋଧ ଆଗରେ ତୁମର ସରଳ ସ୍ୱଭାବ ତିଷ୍ଠି ପାରିବନାହିଁ । ତୁମ ଶରୀରର ଦିବ୍ୟ ଆଭରଣ ଆଗରେ ଡମ୍ବରୁ, ତ୍ରିଶୂଳ, ଧନୁ, ଖଡ୍ଗ, ନରକପାଳଧାରୀ ଶିବ କିପରି କଦାକାର ଦେଖାଯିବେ, ଥରେ ମନରେ ଚିନ୍ତାକରି ଦେଖିଲ ? ଶିବ ନିଶାଦ୍ରବ୍ୟ ସେବନରେ ସଦା ଉନ୍ମତ୍ତ । ସେ ତୁମପରି ସୁନ୍ଦରୀଙ୍କୁ ଶ୍ରଦ୍ଧା କରିବେ କିପରି ?

"ସର୍ବୋପରି, ତୁମେ ଆଗ୍ରହଶୀଳା, ମମତାମୟୀ; କିନ୍ତୁ ଶିବ ସଦାଗ୍ରହହୀନ ଏବଂ ମାୟାମମତା ଶୂନ୍ୟ ! ମୋର ମନେ ହେଉଛି, ତୁମେ ଦୁର୍ଭାଗ୍ୟର ବଶବର୍ତ୍ତୀ ହୋଇ ଏପରି ଏକ ଦୁରାଗ୍ରହ କରିଛ ।"

ପାର୍ବତୀ ବଟୁଙ୍କ ମୁଖରୁ ଶିବ ନିନ୍ଦା ଶୁଣି କାନରେ ଆଙ୍ଗୁଳି ଦେଇ ଛିଡ଼ା ହୋଇ କ୍ରୋଧରେ ଥରିବାକୁ ଲାଗିଲେ । ସେ ଅତିଥିଙ୍କୁ ସମୁଚିତ ଶାସ୍ତି ଦେଇ ପାରିଥା'ନ୍ତେ; କିନ୍ତୁ ବ୍ରାହ୍ମଣଙ୍କୁ ଦଣ୍ଡ ଦେବା ଅନ୍ୟାୟ ବୋଲି ମନେ କରି, ସେଠାରୁ ପଳାଇ ଯିବାକୁ ବସିଲେ । ପାର୍ବତୀଙ୍କ ମନୋଭାବ ତଥା ଦୃଢ଼ତାରେ ଶିବ ମୁଗ୍ଧ ହୋଇଯାଇ ଶିବରୂପରେ ପ୍ରକଟ ହୋଇ କହିଲେ—"ଦେବି ! ଚିରକାଳ ମୁଁ ତୁମରି ପ୍ରେମପାଶରେ ଆବଦ୍ଧ । ତୁମ ପରି ପତିପରାୟଣା, ଅନନ୍ୟସକ୍ତା ନାରୀ ପାଇ ମୁଁ ଗର୍ବିତ । ତୁମେ ମୋର ଯୁଗ-ଯୁଗର ପ୍ରାଣପ୍ରିୟା, ଜନ୍ମଜନ୍ମାନ୍ତରର ସହଧର୍ମିଣୀ । ଚାଲ, କୈଳାସକୁ ଫେରିଯିବା ।"

ନିଜ ସମ୍ମୁଖରେ ପ୍ରାଣପ୍ରିୟ ଆରାଧ୍ୟ ଦେବଙ୍କୁ ଦେଖି ପାର୍ବତୀ ଲଜ୍ଜା, ସଙ୍କୋଚ, ଆନନ୍ଦ, ହର୍ଷ ତଥା ବିସ୍ମୟରେ ଅଭିଭୂତା ହୋଇ ପଡ଼ିଲେ । ସେ ସଙ୍ଗେ ସଙ୍ଗେ ପାଦ୍ୟ ଅର୍ଘ୍ୟାଦିରେ ଶିବଙ୍କ ପାଦପୂଜା କରି ବିନୀତ ଭାବରେ କହିଲେ—"ଦେବ, ମୁଁ ସଦାସର୍ବଦା ଆପଣଙ୍କର ଚରଣ ସେବିକା; କିନ୍ତୁ ମୁଁ ଯେଉଁ ରୂପରେ ଅବତୀର୍ଣ୍ଣା ହୋଇଛି, ସେହି ଅନୁସାରେ

କୁଳାଗୃର ପାଳନ କରିବାକୁ ବାଧ୍ୟ ହେଉଛନ୍ତି । ଆପଣ ମୋତେ ଏହି ଅବସ୍ଥାରେ ଏଠାରୁ କୈଳାସକୁ ନେଇଗଲେ, ମୋ' ପିତାମାତାଙ୍କ ନାମରେ ଅପବାଦ ରଟିବ । ମୁଁ ପିତାଙ୍କର ଆଜ୍ଞାଧୀନା କୁମାରୀ କନ୍ୟା । ପିତା କେବଳ ମୋତେ ସମ୍ପ୍ରଦାନ କରି ପାରିବେ । ଆପଣ ପିତାଙ୍କ ନିକଟକୁ ଯାଇ ମୋତେ ବିବାହ କରିବା ଲାଗି ଆଗ୍ରହ ପ୍ରକାଶ କରନ୍ତୁ । ମୁଁ ଜାଣେ, ମୋ' ପିତା ମଧ୍ୟ ଆପଣଙ୍କ ହସ୍ତରେ ମୋତେ ଅର୍ପଣ କରିବାରେ ଆଦୌ ଆପତ୍ତି କରିବେ ନାହିଁ । ଆପଣ ମୋ' ସହିତ ବେଦୋକ୍ତ ବିଧିରେ ବିବାହ କରି କୈଳାସକୁ ମୋତେ ନେଇ ଯିବେ । ପୂର୍ବଜନ୍ମରେ ଆମର ବିବାହ ବେଦୋକ୍ତ ବିଧିବିଧାନରେ ହୋଇ ନଥିବାରୁ, ଆମେ ପରସ୍ପରଠାରୁ ଅକାଳରେ ବିଚ୍ଛିନ୍ନ ହୋଇଗଲେ । ତେଣୁ ଏଥର ଆପଣ ସମ୍ପୂର୍ଣ୍ଣ ବିଧି-ବିଧାନରେ ମୋର ପାଣିଗ୍ରହଣ କରନ୍ତୁ ।"

ମୁଁ ତ କାହାରି ଆଗରେ ହାତ ପାତିବି ନାହିଁ । ମାଗିବା ହେଉଛି ସବୁଠାରୁ ନୀଚ କର୍ମ" କହିଲେ ଭୋଳାନାଥ ଶଙ୍କର ।

"ଆପଣଙ୍କ ପାଇଁ ଉଚ୍ଚନୀଚ କର୍ମ ପୁଣି କ'ଣ ?" କହିଲେ ପାର୍ବତୀ—"ଆପଣଙ୍କ ପକ୍ଷରେ ଏହା ଗୋଟିଏ ଲୀଳା । ଆପଣ ମୋ'କଥା ମାନି କେବଳ ମୋର ପାଇଁ ମୋ' ପିତାଙ୍କ ଆଗରେ ଆପଣଙ୍କ ଇଚ୍ଛା ପ୍ରକାଶ କରନ୍ତୁ ।"

ଭକ୍ତର ମନୋବାଞ୍ଛା ପୂରଣ କରିବା ପ୍ରଭୁଙ୍କର କର୍ତ୍ତବ୍ୟ । ତେଣୁ ସେ ସ୍ୱୀକୃତି ପ୍ରଦାନ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ପାର୍ବତୀ ଆନନ୍ଦିତା ହୋଇ ପିତାଙ୍କ ଘରକୁ ଫେରିଗଲେ । ପାର୍ବତୀଙ୍କୁ ବନରୁ ଫେରି ଆସିଥିବାର ଦେଖି ପିତାମାତାଙ୍କ ମନରେ ଆନନ୍ଦର ଉଲ୍ଲାସ ଖେଳିଗଲା । ସେମାନେ ପାର୍ବତୀଙ୍କଠାରୁ ଶିବଙ୍କ ସ୍ୱୀକୃତି ସମ୍ବାଦ ପାଇ ଆହୁରି ଉଲ୍ଲସିତ ହୋଇ ଉଠିଲେ; ଶିବ କିନ୍ତୁ ଥିଲେ ଅତ୍ୟନ୍ତ କୌତୁକୀ । ସେ ଆଉ ଗୋଟିଏ ଲୀଳା ପ୍ରକଟ କଲେ ।

ଦେବତାମାନେ ପାର୍ବତୀଙ୍କ ବିବାହ ଶିବଙ୍କ ସହିତ ହେଉଥିବାର ଶୁଣି ମନେ ମନେ ଚିନ୍ତିତ ହୋଇଗଲେ । ସେମାନେ ଭାବିଲେ—'ଶିବଙ୍କ ହାତରେ କନ୍ୟାଦାନ କଲେ ହିମାଳୟ ମୁକ୍ତ ହୋଇଯିବେ । ଏହା ଫଳରେ ସେଠାକାର ସ୍ଥାବର ସମ୍ପତ୍ତି ନଷ୍ଟ ହୋଇ ଯିବ । ହିମାଳୟର ଅସ୍ତିତ୍ୱ ନ ରହିଲେ ପୃଥିବୀ ରସାତଳଗାମୀ ହେବ । ଆଉ ଯାଗଯଜ୍ଞ ହୋଇ ପାରିବ ନାହିଁ ଏବଂ ଦେବତାମାନଙ୍କୁ ମଧ୍ୟ ଯଜ୍ଞଭାଗ ମିଳିବନାହିଁ । ତେଣୁ କୌଣସି ପ୍ରକାର ଶିବ ପାର୍ବତୀଙ୍କ ବିବାହ ବନ୍ଦ ହୋଇଯିବା ଆବଶ୍ୟକ ।'

ସୂତ ମୁନିମାନଙ୍କୁ ସମ୍ବୋଧନ କରି କହିଲେ—"ହେ ମୁନିଗଣ ! ସ୍ୱାର୍ଥପରାୟଣ ବ୍ୟକ୍ତି ଅନେକ କିଛି ଚିନ୍ତା କରିପାରନ୍ତି । ସେମାନେ ନିଜର କଳ୍ପିତ ସ୍ୱାର୍ଥ ପଥରେ ଅଗ୍ରସର

ହୋଇ ସାର୍ବଜନୀନ ସ୍ୱାର୍ଥରେ ବିଘ୍ନ ଘଟାଇଥା'ନ୍ତି । ଦେବତାମାନେ ନିଜର ଅଭିପ୍ରାୟ ଦେବଗୁରୁ ବୃହସ୍ପତିଙ୍କୁ ଶୁଣାଇ ମେନା ଓ ହିମାଳୟଙ୍କ ନିକଟରେ ଶିବନିନ୍ଦା କରିବାଲାଗି ତାଙ୍କୁ ଅନୁରୋଧ କଲେ ।"

ଏହା ଶୁଣି ବୃହସ୍ପତି ଅତ୍ୟନ୍ତ ବିମର୍ଷ ହୋଇ କହିଲେ—"ତୁମେମାନେ ନିତାନ୍ତ ସ୍ୱାର୍ଥପର । ତୁମେମାନେ ଏଠାରୁ ଚାଲିଯାଅ । ଆଉ ଦିନେ ହେଲେ ଏ'ଭଳି ଘୃଣିତ ପ୍ରସ୍ତାବ ମୋ'ଆଗରେ ଉଠାଇବନାହିଁ । ଯେ ମୋ' ଆଗରେ ଶିବ ନିନ୍ଦା କରିବ, ତାକୁ ହତ୍ୟା କରିବା ପାଇଁ ମଧ୍ୟ ମୁଁ ଆଦୌ ପଶ୍ଚାତ୍‌ପଦ ହେବି ନାହିଁ ।"

ଦେବତାମାନେ ସେଠାରୁ ଯାଇ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ । ବ୍ରହ୍ମା ସେମାନଙ୍କ ଅଭିଯୋଗ ଶୁଣି କହିଲେ—"ଏହା ମୋ'ଦ୍ୱାରା ସମ୍ଭବ ହେବନାହିଁ । ତୁମେମାନେ ସ୍ୱୟଂ ଶିବଙ୍କ ପାଖକୁ ଯାଅ । ସେ ଅତ୍ୟନ୍ତ ଦୟାଳୁ ପୁରୁଷ । ସେ ତୁମମାନଙ୍କ ସ୍ୱାର୍ଥରକ୍ଷା ପାଇଁ ନିଜେ ନିଜର ନିନ୍ଦା କରିବେ ।"

ଦେବଗଣ ବ୍ରହ୍ମାଙ୍କଠାରୁ ବିଦାୟ ନେଇ ଶିବଙ୍କ ନିକଟରେ ପହଞ୍ଚିଲେ । ସେଠାରେ ହାତ ଯୋଡ଼ି ନିଜର ଅଭିପ୍ରାୟ ଜଣାଇବାରୁ, ଶିବ ହସି ହସି କହିଲେ—"ମୁଁ ଆଦୌ ବିବାହ କରିବା ଲାଗି ବ୍ୟସ୍ତ ନୁହେଁ । ତୁମେମାନେ ବିଷ୍ଣୁଙ୍କ ସହିତ ଆସି ମୋତେ ବାଧ କରାଇଥିଲ । ତା'ପରେ ପୁଣି ହିମାଳୟଙ୍କ କନ୍ୟା ପାର୍ବତୀ ମଧ୍ୟ ମୋତେ ପାଇବା ପାଇଁ କଠୋର ତପସ୍ୟା କରୁଥିଲେ । ଠିକ୍ ଅଛି, ମୁଁ ମେନାଙ୍କ କାନରେ ମୋ' ଅବଗୁଣଯାକ ପକାଇଦେବି । ତା'ପରେ ହିମାଳୟ ଓ ମେନାଙ୍କ ମଧ୍ୟରେ କଳହ ସୃଷ୍ଟି ହୋଇଯିବ ଏବଂ ତା'ଫଳରେ ଏ' ବିବାହ ବନ୍ଦ ହୋଇଯିବାର ସମ୍ଭାବନା ରହିଛି ।"

ଦେବତାମାନଙ୍କୁ ବିଦାୟ ଦେଇ ଶିବ ଗୋଟିଏ ବୃଦ୍ଧ ଜ୍ୟୋତିଷ ବେଶରେ ଯାଇ ହିମାଳୟଙ୍କ ଗୃହରେ ପହଞ୍ଚିଗଲେ । ହିମାଳୟ ଜ୍ୟୋତିଷଙ୍କୁ ପରମ ଆଗ୍ରହରେ ଘରେ ବସାଇ ଆଗମନର କାରଣ ପଚାରିଲେ । ପାଖରେ ଛିଡ଼ା ହୋଇଥିବା ପାର୍ବତୀଙ୍କ ଆଡ଼କୁ ଚାହିଁ ପଚାରିଲେ ଜ୍ୟୋତିଷ ବେଶଧାରୀ ଶିବ—"ଏ ଝିଅଟି ଆପଣଙ୍କର ତ ?"

ପାର୍ବତୀ ବେଶ୍ ଜାଣି ପାରିଲେ ଯେ, ଏ ଜ୍ୟୋତିଷ ନିଶ୍ଚୟ ଭଗବାନ୍ ଶଙ୍କର । ସେ ପୁଣି ଗୋଟିଏ ନୂତନ କୌଶଳ ଉଦ୍‌ଭାବନ କରିଛନ୍ତି ।

ହିମାଳୟ ପାର୍ବତୀର ହସ୍ତରେଖା ଗଣନା କରିବା ପାଇଁ ଜ୍ୟୋତିଷଙ୍କୁ ଅନୁରୋଧ କଲେ । ଶିବ ହିମାଳୟଙ୍କ ସମ୍ମୁଖରେ ପାର୍ବତୀଙ୍କ ପାଣି ଗ୍ରହଣ କରି ହସ୍ତରେଖାଗୁଡ଼ିକୁ ନିରୀକ୍ଷଣ କରି ଦେଖିଲେ । ଶିବ ତାଙ୍କର ପାଣିସ୍ପର୍ଶ କରନ୍ତେ, ପାର୍ବତୀଙ୍କ ଶରୀରରେ ଶିହରଣ ଖେଳିଗଲା । ସେ ଆତ୍ମବିସ୍ମୃତ ହୋଇ ଜ୍ୟୋତିଷଙ୍କ ହାତରେ ହାତରଖି ଅପୂର୍ବ ଆନନ୍ଦରେ ବୁଡ଼ି ରହିଲେ । ଶିବ ପାର୍ବତୀଙ୍କ ହସ୍ତରେଖା ଗଣନା କରି କହିଲେ—"ମହାରାଜ, ଆପଣ ଯେଉଁ ନିଷ୍ପତ୍ତି ନେଇଛନ୍ତି, ତାହା ଆଦୌ କନ୍ୟା ପକ୍ଷରେ ମଙ୍ଗଳଜନକ ନୁହେଁ ।"

ହିମାଳୟ ଆଶ୍ଚର୍ଯ୍ୟ ହୋଇ କହିଲେ—"ମୁଁ କି କଷ୍ଟିଓ୍ରି ନେଇଛି ? ତାହା ଉପରେ ମୋ' କନ୍ୟା ପକ୍ଷରେ ମଙ୍ଗଳପ୍ରଦ ନୁହେଁ ?"

ଜ୍ୟୋତିଷ ଟିକିଏ ଗମ୍ଭୀର ହୋଇଯାଇ କହିଲେ—"ଆପଣ ଏହି ଅବୋଧ ବାଳିକାଟିକୁ ଜଣେ ନିର୍ଗୁଣ, କୁଳହୀନ, ସଦାଘୂରି ରହିତ, କପାଳୀ, ଅଶୁଚି, ଅଘୋର, ବୃଦ୍ଧ, ଜଟାଧାରୀ ହାତରେ ସମର୍ପି ଦେବା ପାଇଁ ମନେ ମନେ ସ୍ଥିର କରିଛନ୍ତି । ଏହି କଷ୍ଟିଓ୍ରି ଫଳରେ ବିଚାରୀ ସୁକୁମାରୀ କନ୍ୟାଟିର ଜୀବନ ନୀରସ ତଥା ହାହାକାରମୟ ହୋଇଯିବ । ଏ' ଶିବଙ୍କୁ ବିବାହ କରି କେଉଁ ସୁଖ ପାଇବ ?" ଏତିକି କହି ଛଦ୍ମବେଶୀ ଶିବ ନିଜ ପାଞ୍ଜିବିଡ଼ା ଓ ଖଡ଼ି ଗୋଟାଳି ଧରି ସେଠାରୁ ବିଦାୟ ହୋଇଗଲେ ।

ଅନ୍ତରାଳରେ ବସି ମେନା ସବୁ ଶୁଣି ନ ଶୁଣିଲାପରି ପଚାରିଲେ—"ଜ୍ୟୋତିଷ କ'ଣ କହୁଥିଲେ କି ?"

"ଏଣ୍ଡୁ ତେଣ୍ଡୁ ଗୁଡ଼ାଏ ବାଜେକଥା ଗପୁଥିଲା··· ।" କହିଲେ ବିରକ୍ତ ହୋଇ ହିମାଳୟ ।

"ନା···ନାଃ, ସେ ଜଣେ ଗୁଣୀ ଜ୍ୟୋତିଷ । ଯାହା କହିଛନ୍ତି ମୁଁ ସବୁ ଶୁଣିଛି । ମୁଁ ମୋ' ଝିଅକୁ ଶିବଙ୍କ ହାତରେ ସମର୍ପି ଦେବାକୁ ଚାହେଁ ନାହିଁ ।"

ଏହା ଶୁଣି ହିମାଳୟ ବିରକ୍ତ ହୋଇ କହିଲେ—"ମୈନାକ ମାଆ, ତୁମେ ଭଲକୁ ଭାଲ କରି ଶୁଣିଛ । ଶିବ ହେଉଛନ୍ତି—ମହାଦେବ । ସେ ଦୟାକରି ଆମ କନ୍ୟାର ପାଣି ଗ୍ରହଣ ଲାଗି ସ୍ୱୀକୃତ ହୋଇଛନ୍ତି । ଏହା ଆମର ସୌଭାଗ୍ୟ । ନହେଲେ, ତାଙ୍କପରି ବୀତରାଗୀ ବିବାହ ପାଇଁ ରାଜି ହୋଇଥାନ୍ତେ କି ?"

"ଶିବ ମହାଦେବ ବା ଦେବାଧିଦେବ ହୋଇ ପାରନ୍ତି; କିନ୍ତୁ ମୋ' ଝିଅକୁ ଜାଣି ଶୁଣି ମୁଁ ନଷ୍ଟ ହେବାକୁ ଦେବିନାହିଁ ! ଯଦି ତା'ଅନୁରୂପ ଯୋଗ୍ୟ ବର ନ ମିଳନ୍ତି, ତେବେ ମୋ' ଝିଅ ସାରାଜୀବନ କୁମାରୀ ହୋଇ ରହିପାରେ; କିନ୍ତୁ ତା' ବେକରେ ମୁଁ ସେ ବୃଦ୍ଧଟାକୁ ଛନ୍ଦିଦେଇ ପାରିବି ନାହିଁ ! ଯଦି ତୁମେ ମୋ' ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବାକୁ ଅଗ୍ରସର ହୁଅ, ତେବେ ଆମେ ମାଆ ଝିଅ ଦୁହେଁ ଉନ୍ନତ ଗିରିଶିଖରରୁ ତଳକୁ ଡେଇଁ ପଡ଼ିବୁ !"

ସୂତ କହିଲେ—"ହେ ଶୌନକ, ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ । ମେନାଙ୍କ ଜିଦ୍ ଆଗରେ ହିମାଳୟଙ୍କ ତୁଣ୍ଡରୁ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ ।"

ପାର୍ବତୀ ମନେ ମନେ ହସି ହସି ଭାବିଲେ—'ଶିବ କେଡ଼େ କୌତୁକପ୍ରିୟ ସତେ ! ଯେ ଜାଣିଶୁଣି ଆମ ଘରେ ଗୋଟିଏ କଳହ ଲଗାଇ ଦେଲେ ।'

କିନ୍ତୁ ସେ ଶିବଙ୍କ ବଚନରେ ଆସ୍ଥା ହରାଇଲେ ନାହିଁ । ସେ ପୁଣି ଭାବିଲେ—'ଶିବ ମୋ' ପିତାଙ୍କ ସମ୍ମୁଖରେ ମୋ' ହାତ ଧରିଛନ୍ତି, ସେ ସତରେ କ'ଣ ଏହା ଅନ୍ୟଥା କରିବେ ?'

ଶିବ ମଧ୍ୟ ଭାବିଲେ—'ଆରେ, ଏ'ତ ଭଲ ହେଲାନାହିଁ । ମୁଁ ଯେଉଁ ପ୍ରତିଶ୍ରୁତି ପାର୍ବତୀଙ୍କୁ ଦେଇଛି, ତାହା ଅନ୍ୟଥା କରିବି କିପରି ? କୌଣସିମତେ ଏ' ଘଟଣାକୁ ପରିବର୍ତ୍ତନ କରିବାକୁ ହିଁ ହେବ !'

ସୂତ କହିଲେ—"ହେ ମୁନିଗଣ, ଶିବଙ୍କ ଲୀଳାକୁ ବୁଝିବା ଲାଗି ସାଧ୍ୟ କାହାର ? ନିଜେ ସବୁ କିଛି ବିଗାଡ଼ିଦେଇ ପୁଣି ସୁଧାରିବାକୁ ବସିଛନ୍ତି । ସେ ସଙ୍ଗେ ସଙ୍ଗେ ସପ୍ତର୍ଷିଙ୍କୁ ସ୍ମରଣ କଲେ ।

ସପ୍ତର୍ଷିଗଣ ପହଞ୍ଚିଗଲା ପରେ ଶିବ କହିଲେ—"ଆପଣମାନେ ଶୀଘ୍ର ଯାଇ ହିମାଳୟ ସହିତ ଆମ ବିବାହର ତିଥି ନିଶ୍ଚିତ କରି ଆସନ୍ତୁ । ଆପଣଙ୍କ କଥାରେ ହିମାଳୟ ମାନିଯିବେ ସତ; କିନ୍ତୁ ତାଙ୍କ ସ୍ତ୍ରୀ ମେନା ଆଦୌ ରାଜି ହେବେ ନାହିଁ । ସେଥିଲାଗି ସାଧ୍ୱୀ ଅରୁନ୍ଧତୀଙ୍କୁ ଆପଣମାନେ ସାଥିରେ ନେଇ ମେନାଙ୍କୁ ବୁଝାଇ ଦିଅନ୍ତୁ ।"

ସପ୍ତର୍ଷିଗଣ ଅରୁନ୍ଧତୀଙ୍କ ସହିତ ହିମାଳୟ ଗୃହରେ ଉପସ୍ଥିତ ହୋଇ ମେନାଙ୍କୁ ବୁଝାଇ ଦେଲେ । ବିବାହର ତିଥି ନିଶ୍ଚିତ ହୋଇଗଲା । ହିମାଳୟ ମଧ୍ୟ ସମସ୍ତ ନଦ ନଦୀ, ବୃକ୍ଷଲତାଙ୍କୁ ନିମନ୍ତ୍ରଣ କଲେ । ଶିବ ମଧ୍ୟ ନାରଦଙ୍କୁ ସ୍ମରଣ କଲେ । ଠିକ୍ ସମୟରେ ଆସି ନାରଦ ଉପସ୍ଥିତ ହୋଇଗଲେ । ତାଙ୍କୁ ଦେଖି କହିଲେ ଶିବ—"ନାରଦ, ତୁମେ ଯେଉଁ ମଞ୍ଜି ପୋତିଥିଲ, ତାହା ଏବେ ଫଳ ଫୁଲରେ ଭରି ଉଠିଛି । ପାର୍ବତୀଙ୍କ ସହିତ ମୋର ବିବାହ ନିଶ୍ଚିତ ହୋଇଯାଇଛି ।"

"ଭଲ ହେଲା" କହିଲେ ମହର୍ଷି ନାରଦ—"ମିଷ୍ଟାନ୍ନ ଖାଇବାକୁ ମିଳିବ ।"

"ନାରଦ ! ବିବାହ ପାଇଁ ତୁମକୁ ସମସ୍ତ ପ୍ରକାର ଆୟୋଜନ କରିବାକୁ ପଡ଼ିବ" କହିଲେ ଶିବ—"ରାଜା ଘରକୁ ବିବାହପାଇଁ ଯିବାକୁ ହେବ, ସବୁ ବ୍ୟବସ୍ଥା ଠିକ୍ ଭାବରେ ହେବା ଆବଶ୍ୟକ ।"

ଏହି ସମୟରେ ହିମାଳୟଙ୍କ ପକ୍ଷରୁ ପୁରୋହିତ ଆସି ଉପସ୍ଥିତ ହୋଇଗଲେ । ନାରଦ ପୁରୋହିତଙ୍କୁ କହିଲେ—"ଆଚ୍ଛା, ବରଯାତ୍ରୀ କେତେଜଣ ନେବାପାଇଁ ହିମାଳୟ କହିଛନ୍ତି ?"

"ମହର୍ଷି ! ଏହା ସାଧାରଣ ଘରେ ପଚରାଯାଏ" କହିଲେ ପୁରୋହିତ—"ହିମାଳୟ ହେଉଛନ୍ତି ନଗାଧିରାଜ, ଆପଣ ତାଙ୍କୁ ଏତେ ଶ୍ରେଷ୍ଠ ବୋଲି ଭାବୁଛନ୍ତି କାହିଁକି ?"

ଶିବ କଥାଟିକୁ ଟିକିଏ ହାସ୍ୟ ବିନୋଦ ଆଡ଼କୁ ବୁଲାଇ ନେଇ କହିଲେ— "ପୁରୋହିତ ମହୋଦୟ, ନାରଦ ମହର୍ଷି ବିବାହ ବିଷୟରେ କ'ଣ ଜାଣନ୍ତି, ସେ ତ ଆଜନ୍ମ ବ୍ରହ୍ମଚାରୀ । ଆପଣ ଅନ୍ୟଥା ଭାବନ୍ତୁନାହିଁ । ହିମାଳୟଙ୍କୁ କହିଦେବେ, ଆମ ସହିତ ଶିବଗଣ ଓ ଦେବଗଣ ବରଯାତ୍ରୀରେ ଯିବେ ।"

ପୁରୋହିତ ଫେରି ଯାଇ ହିମାଳୟଙ୍କୁ ସମ୍ବାଦ ଦେବାପରେ ସେ ସମସ୍ତ ପ୍ରକାର ଆୟୋଜନରେ ଲାଗିଗଲେ । ବିଶ୍ୱକର୍ମାଙ୍କୁ ଡକାଇ ସେ ବିବାହ ମଣ୍ଡପ ନିର୍ମାଣ କରାଇଲେ ଏବଂ ରନ୍ଧନ ଆଦିର ସୁବ୍ୟବସ୍ଥା ମଧ୍ୟ ସୁଚାରୁରୂପେ କରାଇଲେ ।

ଶିବ ମଧ୍ୟ ନାରଦଙ୍କ ମାଧ୍ୟମରେ ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ରାଦି ଲୋକପାଳ ତଥା ଅନ୍ୟାନ୍ୟ ଦେବଗଣଙ୍କୁ ନିମନ୍ତ୍ରଣ ପଠାଇଲେ । ସମସ୍ତେ ନିର୍ଦ୍ଦିଷ୍ଟ ତିଥିରେ ଆସି ପହଞ୍ଚିଗଲେ । ସମସ୍ତଙ୍କ ଉପସ୍ଥିତିରେ ହସି ହସି କହିଲେ ବିଷ୍ଣୁ—"ଦେବାଧିଦେବ, ଆପଣ ବିବାହ ବିଧି ଶେଷ ପର୍ଯ୍ୟନ୍ତ ନିଜକୁ ଭୁଲି ଯାଆନ୍ତୁ । ଆମେମାନେ ଯେପରି ଚାହିଁବୁ, ଆପଣ ସେହିପରି ପ୍ରସ୍ତୁତ ହେବେ । ଆପଣ ଯାହା କରିବେ, ତାହା ସାଂସାରିକ ଲୋକମାନଙ୍କ ପକ୍ଷରେ ଉଦାହରଣୀୟ ହୋଇ ରହିବ ।"

ଶିବଙ୍କ ସ୍ୱୀକୃତି ପାଇ ଅତ୍ରି, ବଶିଷ୍ଠାଦି ଋଷିମାନେ ବୈଦିକ ବିଧି ଅନୁସାରେ ବିବାହର ଆୟୋଜନ କରିବାକୁ ଲାଗିଲେ । ସମସ୍ତ ପ୍ରକାର ବୈଦିକ ବିଧିବିଧାନ ଶେଷ ହେବାପରେ ବରଯାତ୍ରୀ ଦଳ ପ୍ରସ୍ତୁତ ହୋଇ ବାହାରିଲେ ।

ସୂତ କହିଲେ—"ମୁନିଗଣ, ଆପଣମାନେ ବିବାହର ବିଧି ଜାଣିବେ ଅବା କିପରି ? କାରଣ ପିଲାଟିଦିନରୁ ଆପଣମାନେ ସନ୍ନ୍ୟାସ ଗ୍ରହଣ କରିଛନ୍ତି । ବିବାହର ବରଯାତ୍ରୀରେ ଯିବାଲାଗି ପ୍ରତ୍ୟେକ ବ୍ୟକ୍ତି ଉତ୍ସାହର ସହିତ ପ୍ରସ୍ତୁତ ହୁଅନ୍ତି ।"

ବିଷ୍ଣୁଙ୍କ ଆଦେଶ ଅନୁସାରେ ଶିବଗଣମାନେ ଶିବଙ୍କୁ ବର ବେଶରେ ସଜାଇ ଦେଲେ । ଶିବଗଣମାନେ ଆଗେ ଆଗେ ବରଯାତ୍ରୀ ସାଜି ଚାଲିଲେ । ସେମାନଙ୍କ ପଛେ ପଛେ ବିଷ୍ଣୁଙ୍କ ସମେତ ଦେବଗଣ ଚାଲିବାକୁ ଲାଗିଲେ । ହିମାଳୟ ମଧ୍ୟ ଆଗେଇ ଆସି ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ, ନିର୍ଦ୍ଦିଷ୍ଟ ବାସଗୃହ ଆଡ଼କୁ ବରଯାତ୍ରୀଙ୍କୁ ଆଗେଇ ନେଲେ ।

ବର ସହିତ ବରଯାତ୍ରୀ ଦଳ ଆଗେଇ ଚାଲିଥିବାବେଳେ ପ୍ରାସାଦ ଉପରେ ଛିଡ଼ା ହୋଇ ମେନା ଶିବ ଓ ଶିବଗଣଙ୍କ ବିକୃତ ରୂପ ଦେଖି ମନେ ମନେ ସପ୍ତର୍ଷିମାନଙ୍କ ଉପରେ ବିରକ୍ତ ହୋଇ ଭାବିଲେ—'ଏମାନେ ନିଶ୍ଚିତ ଭାବରେ ମୋତେ ଠକାଇଦେଲେ । ମୋ' ସୁକୁମାରୀ କନ୍ୟାଟି ଏହି ବୁଢ଼ା ପାଲରେ ପଡ଼ି ଜୀବନଟିକୁ ନଷ୍ଟ କରିଦେବ ।' ତେଣୁ ନାରଦଙ୍କ ହାତରେ ସପ୍ତର୍ଷିଙ୍କୁ ଡକାଇ ଆଣି ମନକଥାଯାକ ସେମାନଙ୍କ ଆଗରେ ବଖାଣି

ଦେଲେ ! ସେମାନେ ଅନେକ ପ୍ରକାର ଶାସ୍ତ୍ର, ପୁରାଣ ଓ ଲୋକକଥାରେ ଉଦାହରଣ ଦେଇ ଏ କନ୍ୟାମାତାଙ୍କୁ ବୁଝାଇ ସନ୍ତୁଷ୍ଟ କରାଥିଲେ ।

ବିବାହ ନିର୍ଣ୍ଣିତ ଲଗ୍ନରେ ସମ୍ପନ୍ନ ହେଲା । ହିମାଳୟ ବରଯାତ୍ରୀମାନଙ୍କୁ ଭୂରି ଭୋଜନରେ ଆପ୍ୟାୟିତ କଲେ ! ଲକ୍ଷ୍ମୀ, ସରସ୍ୱତୀ, ସାବିତ୍ରୀ, ଗାୟତ୍ରୀଙ୍କ ସମେତ ଦେବଗଣଙ୍କ ପତ୍ନୀମାନେ ହାସ୍ୟ, ବିନୋଦ ଓ କୌତୁକ ମଧ୍ୟରେ ଶିବ ଶିବାଙ୍କୁ ପ୍ରଫୁଲ୍ଲିତ କରାଇଲେ । ବିବାହ କର୍ମ ସର୍ବ ଶୁଭରେ ସମ୍ପନ୍ନ ହେବାପରେ ବିଦାୟ ବେଳା ଆସି ଉପସ୍ଥିତ ହୋଇଗଲା । ମେନା ପାର୍ବତୀଙ୍କୁ ପାତିବ୍ରତ୍ୟ ସମ୍ବନ୍ଧରେ ଅନେକ ଉପଦେଶ ଦେଇ ବରକନ୍ୟାଙ୍କୁ ବିଦାୟ ଦେଲେ ।

ପାର୍ବତୀ ପିତାଳୟରୁ ବିଦାୟ ନେଇ ଆସିବା ସମୟରେ ମାତା ଓ ସଖୀମାନଙ୍କୁ ଧରି ଅନେକ କାନ୍ଦିଲେ । ଶେଷରେ ସେ ଶିବଙ୍କ ସହିତ ଆନନ୍ଦ ମନରେ କୈଳାସପୁରୀକୁ ଆସି ସୁଖରେ କାଳ ଯାପନ କଲେ ।

ବରଯାତ୍ରୀମାନେ କୈଳାସପୁରୀରେ ଶିବଙ୍କ ଦ୍ୱାରା ସତ୍କୃତ ହୋଇ ନିଜ ନିଜ ସ୍ଥାନକୁ ବାହୁଡ଼ିଗଲେ । ସମସ୍ତେ ବିଦାୟ ନେଇଯିବା ପରେ ଶିବ ନାନା ହାସ୍ୟ, ବିନୋଦ ଓ କୌତୁକରେ ପ୍ରାଣପ୍ରିୟା ଶିବାଙ୍କ ସହିତ ନାନା କ୍ରୀଡ଼ାରେ ମଜ୍ଜିଗଲେ ।

ସୂତ କହୁଛନ୍ତି—"ହେ ମୁନିଗଣ, ମୁଁ ଅତି ସଂକ୍ଷେପରେ ଆପଣମାନଙ୍କୁ ଶିବଙ୍କ ବିବାହ ବୃତ୍ତାନ୍ତ କହିଲି । ଶିବଙ୍କ ଚରିତ ଅନନ୍ତ । ତାହା ବର୍ଣ୍ଣନ କରିବା ଚତୁର୍ମୁଖ ବ୍ରହ୍ମା ଏବଂ ସହସ୍ର ମୁଖରେ ଶେଷ ଦେବ ମଧ୍ୟ ସମର୍ଥ ହେବେ ନାହିଁ । ଯେଉଁ ବ୍ୟକ୍ତି ଶ୍ରଦ୍ଧାର ସହିତ ଶିବଙ୍କ ପ୍ରସଙ୍ଗ ଶୁଣନ୍ତି, ସେମାନେ ଶେଷରେ ପରମପଦ ଲାଭ କରନ୍ତି ।"

## ଛପ୍ପୟ

"ବିବିଧ ଭାଁତି ତେଂ କରୀ ପରୀକ୍ଷା ଶିବ ଗିରିଜାକୀ ।
ଦୃଢ଼ ନିଷ୍ଠା ଲଖି ବରୀଂ କାମନା ପୁରୀ ପ୍ରଜା କୀ ।।
ଋଷି ହରି ସୁର ଗନ୍ଧର୍ବ ସକଲ ମିଲି ଧୂମ ମଚାଈ ।
ଶିବ କୀ ନିରଖି ବରାତ ସ୍ୱୟଂ ଶୋଭା ସକୁଚାଈ ।।
ଜଡ୍ୟ ଶକ୍ତି ଶିବ କୀ ପ୍ରିୟା, ଅପନାଇଂ ଫିରତେଂ ବରୀ ।
ଶିବ ଦୂଲ୍ହା ଦୁଲହିନ ଶିବା, ରତି ଲଖି ପତିହିତ ପଗ ପରୀ ।।



## ଉପସଂହାର

"ଇଦଂ ପବିତ୍ରଂ ପରମୀଶଚେଷ୍ଟିତମ୍
ଯଶସ୍ୟମାୟୁଷ୍ୟମଘୌଘମର୍ଷଣମ୍ ।
ଯୋ ନିତ୍ୟ ଦାଽଽକର୍ଣ୍ଣ୍ୟ ନରୋଽନୁକୀର୍ତ୍ତୟେଦ୍
ଧୁନୋତ୍ୟ ଘଂ କୌରବ ଭକ୍ତିଭାବତଃ ॥"

(ଭାଗବତ ୪।୭।୬୧)

ଛପ୍ପୟ

"କାଲୀ ଗୌରୀ ଭଈଂ ହଁସୀ ମେ କୋପ ଜତାୟୋ ।
ଦେବୀ ଦୟା ଦିଖାଈ ମଗର ତେଂ ବାଲ ଛୁଡ଼ାୟୋ ॥
ଗନପତି ଔର କୁମାର ପୁତ୍ର ଦ୍ୱୈ ଅତି ହୀ ପ୍ୟାରେ ।
ବାହନ ଚୂହୋ ମୋର ଭକ୍ତ ଭୟ ହରିବେବାରେ ॥
ଶକ୍ତିଯୁକ୍ତ ଶିବ ବିବିଧି ବିଧି, ଲୀଲା ପ୍ରାକୃତ ବତ୍ କରହିଁ ।
ଜାହି ସୁନହିଁ ଜେ ଭକ୍ତଗନ ତିନକେ ଅଘ ଛିନମହଁ କଟହିଁ ॥"

---

ଅର୍ଥାତ୍—ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର ! ଶିବଙ୍କର ଚରିତ ପରମ ପବିତ୍ର । ଏହା ଶ୍ରବଣ କଲେ, ପାପରାଶି କ୍ଷୟ ହୁଏ, ଆୟୁ ବୃଦ୍ଧି ହୁଏ ଏବଂ ଲୋକ ଯଶସ୍ୱୀ ହୁଏ । ଯେଉଁ ବ୍ୟକ୍ତି ଏହି ପବିତ୍ର ଆଖ୍ୟାନକୁ ଭକ୍ତିଭାବରେ ନିତି ଶ୍ରବଣ କରିବ କିମ୍ବା ଅନ୍ୟଠାରୁ ଶୁଣି ପ୍ରଚାର କରିବ ଏବଂ କୀର୍ତ୍ତନ କରିବ, ତା'ର ସମସ୍ତ ପାପ ଧ୍ୱଂସ ହୋଇଯାଏ ।"

ଶକ୍ତି ସହିତ ଶିବ ସର୍ବଦା କ୍ରୀଡ଼ା କରୁଛନ୍ତି । ସଂସାରରେ ପ୍ରତ୍ୟେକ ନାରୀ ଶିବା ଓ ପ୍ରତ୍ୟେକ ପୁରୁଷ ଶିବ ଅଟନ୍ତି । ଶିବଙ୍କ ଲୀଳା ମଧ୍ୟରେ ଅସମ୍ଭବ ବୋଲି କିଛି ନାହିଁ । ସେ କର୍ମନିଷ୍ଠାମକ ଓ ପ୍ରାରବ୍ଧର ବିଧାତା ଅଟନ୍ତି । ସେ ପ୍ରାଣୀର ମଙ୍ଗଳ ପାଇଁ ଶିବାଙ୍କ ସହିତ ସର୍ବଦା କ୍ରୀଡ଼ାରେ ରତ ।

ସୁତଙ୍କଠାରୁ ହରଗୌରୀଙ୍କ ସମ୍ବାଦ ଶୁଣିବାପରେ ପଚାରିଲେ ଶୌନକ—"ମହର୍ଷେ, ଆପଣ ଭଗବତୀ ପାର୍ବତୀଙ୍କୁ କାଳୀ ଏବଂ ତାଙ୍କ ବର୍ଣ୍ଣ ନୀଳପଦ୍ମ ତୁଲ୍ୟ ବୋଲି ପୂର୍ବରୁ କହିଛନ୍ତି ; କିନ୍ତୁ ଆମେ ଶୁଣିଛୁ, ସେ ଗୌରବର୍ଣ୍ଣା ଥିବାରୁ ତାଙ୍କ ନାମ ଗୌରୀ । ଆଉ ମଧ୍ୟ ଶିବଙ୍କର ଅନ୍ୟନାମ ଗୌରୀଶଙ୍କର । ତେଣୁ ଆପଣ ଆମ ମନରୁ ଏ ସନ୍ଦେହ ଦୂର କରାଇ ଆମକୁ ଶଙ୍କାମୁକ୍ତ କରନ୍ତୁ ।"

ଏହା ଶୁଣି ସୂତ ହସିହସି କହିଲେ—"ମୁନିବୃନ୍ଦ, କ'ଣ ଅବା ମୁଁ କହିବି ? ଆପଣମାନେ ବାଲବ୍ରହ୍ମଚାରୀ । ଘରସଂସାର, ସ୍ୱାମୀ ସ୍ତ୍ରୀ ଏବଂ ସେମାନଙ୍କ ମଧ୍ୟରେ ହାସ-ପରିହାସ ସମ୍ବନ୍ଧରେ ଆପଣ ଜାଣିବେ କୁଆଡ଼ୁ ? ନବବଧୂ ଘରକୁ ଆସିବା ପରେ ସ୍ୱାମୀ ତା' ସହିତ ଅନେକ ହାସ୍ୟ ବିନୋଦ କରିଥାଏ । ସେହି କୌତୁକ ମଧ୍ୟରେ ବେଳେ ବେଳେ ଅପ୍ରୀତିକର ପରିସ୍ଥିତି ଉପୁଜିଥାଏ । ସେହିପରି ଗୋଟିଏ ଘଟଣା ଘଟିଲା ହର-ପାର୍ବତୀଙ୍କ ଜୀବନରେ ।"

ଥରେ ଗିରିଜା ଶିବଙ୍କ ଗଳାରେ ବାହୁବେଷ୍ଟନ କରି ପ୍ରେମରେ ତଲ୍ଲୀନା ହୋଇ ବସିଥାଆନ୍ତି । ହଠାତ୍ ଶିବଙ୍କ ମନରେ ଗୋଟିଏ କୌତୁକ ଜାତ ହେଲା । ସେ କହିଲେ—"ଗିରିଜେ, ତୁମର ଆଲିଙ୍ଗନ ଠାଣି କପରି ଦିଶୁଛି କହିଲ ?"

"ପାର୍ବତୀ ଲାଜରେ ସଢ଼ିଯାଇ ପ୍ରଥମେ କିଛି ଉତ୍ତର ନ ଦେଇ ଆହୁରି ଗାଢ଼ ଆଲିଙ୍ଗନ କରି କହିଲେ—"ମୁଁ କପରି ଦିଶୁଛି ଆପଣ କହୁନାହାନ୍ତି କାହିଁକି ?"

ଶିବ ତ ଭୋଳା ମହେଶ । ସେ ପରିଣାମ ଚିନ୍ତା ନ କରି କହିଲେ—"ବିଶାଳ ଚନ୍ଦନ ବୃକ୍ଷରେ ଗୋଟିଏ କାଳୀନାଗୁଣୀ ଗୁଡ଼େଇ ହୋଇ ରହିବା ପରି ତୁମେ ଦିଶୁଛ । କାରଣ ତୁମେ ଶ୍ୟାମବର୍ଣ୍ଣା କନା...?"

"କ'ଣ କହିଲ...? ମୁଁ କୁରୂପା କାଳୀ ??" ଗର୍ଜି ଉଠିଲେ ଗିରିଜା—"କହିବ ନାହିଁ କାହିଁକି ? ମୁଁ ତୁମର ପାଇଁ ବର୍ଷ ବର୍ଷ ଧରି ଯେଉଁ କଠୋର ତପସ୍ୟା କରିଥିଲି, ତାର ଠିକ୍ ପ୍ରତିଦାନ ଦେଲ ତୁମେ...?" କାନ୍ଦି କାନ୍ଦି ମଥା ହଛୁଳାଇ ଦେଇ ପୁଣି କହିଲେ ଶିବା—"ବିଧାତା ମୋ ରୂପକୁ କାଳୀ କରିଛନ୍ତି ବୋଲି ତୁମେ ମୋତେ ଘୃଣା କରୁଛ...। କିନ୍ତୁ ନିଜ ରୂପଗୁଣ କଥା ନିଜେ ଥରେ ହେଲେ ଚିନ୍ତା କରିଛ କି ? କାହିଁ...ମୁଁ ତ ହତନହେଲେ ତୁମ ରୂପ ପ୍ରତି ଘୃଣାଭାବ ପ୍ରଦର୍ଶନ କରି ନାହିଁ ? ଅଥଚ..."

ପାର୍ବତୀଙ୍କ କ୍ରୋଧ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଭୋଳାନାଥ । ସେ ଆଦୌ ଚିନ୍ତାକରି ନ ଥିଲେ ଯେ, ସାମାନ୍ୟ ଥଟ୍ଟା ଏପରି ପ୍ରଳୟକାଣ୍ଡ ସୃଷ୍ଟି କରିବ । ସେ ବିନୀତ ଭାବରେ କହିଲେ—"ଦେବି ! ପ୍ରାଣପ୍ରିୟେ ! ତୁମେ ହଠାତ୍ ଏତେ ରାଗିଯାଉଛ କାହିଁକି ? ମୁଁ ତୁମ ରୂପ ଆଦୌ ଘୃଣା କରେନାହିଁ । ତୁମେ ମୋର ପରମ ପ୍ରୀତିଦାୟିନୀ, ପ୍ରାଣପ୍ରିୟା···। ମୁଁ ତୁମ ରୂପକୁ ଆଦୌ ତିରସ୍କାର କରି ନାହିଁ । କେବଳ ପରିହାସରେ ଏପରି କହିଛି । ମୁଁ ଯଦି ଥଟ୍ଟା ତାମସାରେ ତୁମକୁ କିଛି କହିବି ନାହିଁ, ତେବେ ଆଉ ତୁମ ସହିତ ପରିହାସ କରିବ କିଏ ? ତୁମେ ମୋତେ ଭୁଲ ବୁଝନାହିଁ; ମୁଁ ତୁମ ରୂପକୁ ନିନ୍ଦା କରି ନାହିଁ ।"

ପାର୍ବତୀ ଶିବଙ୍କ ଅନୁନୟ ପ୍ରତି କର୍ଣ୍ଣପାତ କଲେନାହିଁ । ସେ ପୂର୍ବପରି ମୁହଁ ତମତମ କରି କହିଲେ—"ମୁଁ ବେଶ୍ ଜାଣେ···! ପୁରୁଷମାନେ ଅସୁନ୍ଦରୀ ନାରୀଙ୍କୁ ଘୃଣା କରନ୍ତି । ତୁମେ ମଧ୍ୟ ମୋର କଳାରୂପକୁ ଘୃଣା କରୁଛ । ମୁଁ ଆଜିଠାରୁ ତପସ୍ୟାରେ ବସୁଛି । ଯେଉଁଦିନ ମୋର କଳାରୂପ ଗୋରା ହୋଇଯିବ, ସେହିଦିନ ମୁଁ ଏ ଘରେ ପାଦ ଦେବି । ଅନ୍ୟଥା ପ୍ରାଣ ବିସର୍ଜନ କରିବି !"

ଶିବ ନିତାନ୍ତ ବ୍ୟସ୍ତ ହୋଇ ଯେତେ ଅନୁନୟ ବିନୟ କଲେ ମଧ୍ୟ କିଛି ଫଳ ହେଲନାହିଁ । ଦେବୀ ପଛକୁ ନ ଚାହିଁ କୈଳାସପୁରୀରୁ ବାହାରି ପଡ଼ିଲେ । ସେ ଯିବାବେଳେ ବୀରକ ନାମକ ଶିବଗଣକୁ ପୁରଦ୍ୱାରରେ ଜଗାଇ ଦେଇ କହିଲେ—"ଦେଖ, ତୁ କୌଣସି ନାରୀକୁ ଭିତରକୁ ଛାଡ଼ିବୁ ନାହିଁ ।"

ପାର୍ବତୀ କୈଳାସରୁ ହିମାଳୟର ଗୋଟିଏ ଉଚ୍ଚ ଶିଖର ଉପରକୁ ଯାଇ ସେଠାରେ ତପସ୍ୟା ଆରମ୍ଭ କରିଦେଲେ । କେତେଦିନ ପରେ ବାୟୁ ଯାଇ କହିଲେ—"ମାତା, ଆଡ଼ୀ ନାମକ ଅସୁରୁଣୀ ଆପଣଙ୍କ ରୂପ ଧରି ଶିବଙ୍କ ନିକଟକୁ ଯାଇଥିଲା; କିନ୍ତୁ ଦେବାଧିଦେବ ତାକୁ ଚିହ୍ନିପାରି ସଙ୍ଗେ ସଙ୍ଗେ ଶୂଳାଘାତରେ ତାକୁ ହତ୍ୟା କରିଦେଲେ ।"

ପାର୍ବତୀ ବେଶ୍ ଜାଣନ୍ତି ଶିବ ତାଙ୍କୁ ପ୍ରାଣରୁ ବଳି ସ୍ନେହ କରନ୍ତି । ତଥାପି ଯେଉଁ କ୍ରୋଧରେ ସେ ପ୍ରତିଜ୍ଞା କରି ପଳାଇ ଆସିଛନ୍ତି, ତାହା ପୂରଣ ନ ହେଲେ, କେଉଁ ମୁହଁରେ ସେହି କଳା ରୂପ ନେଇ ସେ ପ୍ରାଣପ୍ରିୟଙ୍କ ସମ୍ମୁଖରେ ଛିଡ଼ା ହେବେ ? ଏହା ଭାବି ଭାବି ପାର୍ବତୀଙ୍କ ମନରେ ତୀବ୍ର କ୍ରୋଧ ଜାତ ହେଲା । ସେହି କ୍ରୋଧରୁ ସଙ୍ଗେ ସଙ୍ଗେ ଗୋଟିଏ ଭୀଷଣାକାର ସିଂହ ଜାତହୋଇ, ଭୟଙ୍କର ଗର୍ଜନ କରି ଆଁ କରି ପାର୍ବତୀଙ୍କ ଆଡ଼କୁ ଧାଇଁ ଆସିଲା । ପାର୍ବତୀ ସିଂହର ପାଟିରେ ପଶିବାକୁ ଉଦ୍ୟତ ହେବା ମାତ୍ରେ ହଠାତ୍ ବ୍ରହ୍ମା ସେଠାରେ ଆବିର୍ଭୂତ ହୋଇ କହିଲେ—"ଦେବି ! ଏ କ'ଣ କରୁଛ ? ତୁମେ ମୋତେ ଯାହା ମାଗିବ, ମୁଁ ସେହି ବରଦାନ ଦେବାକୁ ପ୍ରସ୍ତୁତ ଅଛି ।"

ପାର୍ବତୀ ଅତ୍ୟନ୍ତ ଦୁଃଖିତା ହୋଇ କହିଲେ—"ପିତାମହ, ଯଦି ଆପଣ ମୋତେ ବର ଦେବାକୁ ଚାହୁଁଛନ୍ତି, ତେବେ ମୋ ଶରୀରର କୃଷ୍ଣବର୍ଣ୍ଣକୁ ଦୂର କରି ମୋତେ ଗୌର-ବର୍ଣ୍ଣା କରିଦିଅନ୍ତୁ ।"

ବ୍ରହ୍ମା କହିଲେ—"ତଥାସ୍ତୁ !" ସେହି ମୁହୂର୍ତ୍ତରେ ଦେବୀଙ୍କ ଶରୀରରୁ ଏକ ଭୀମକାୟ କୃଷ୍ଣବର୍ଣ୍ଣା କାଳୀ ହାତରେ ଖଣ୍ଡା ଧରି ଉତ୍ପନ୍ନ ହେଲେ ! ସେ ଥିଲେ ତ୍ରିନେତ୍ରା । ତାଙ୍କୁ ଲକ୍ଷ୍ୟ କରି କହିଲେ ବ୍ରହ୍ମା—"ଦେବି ! ତୁମେ ବିନ୍ଧ୍ୟାଚଳରେ ଯାଇ ନିବାସ କର । ଏହି ସିଂହ ହେବ ତୁମର ବାହନ । ସେଠାରେ ତୁମେ ସମସ୍ତଙ୍କଦ୍ୱାରା ପୂଜିତା ହେବ ।" ବ୍ରହ୍ମାଙ୍କ ଆଜ୍ଞା ପାଇ କାଳିକା ବିନ୍ଧ୍ୟାଚଳକୁ ଯାଇ ସେଠାରେ ନିବାସ କଲେ ।

ଶରୀରରୁ କୃଷ୍ଣବର୍ଣ୍ଣ ନିର୍ଗତ ହୋଇ ଯାଆନ୍ତେ, ପାର୍ବତୀ ସ୍ୱର୍ଣ୍ଣବର୍ଣ୍ଣା ଗୌରୀ ରୂପରେ ପ୍ରତିଭାତ ହେଲେ । ଦେବୀ ଏହି ସୁନ୍ଦର ରୂପ ଧାରଣ କରି ପ୍ରାଣପତି ଶିବଙ୍କ ନିକଟରେ ଉପସ୍ଥିତା ହେଲେ । ତାଙ୍କର ପରିବର୍ତ୍ତିତ ରୂପ ଦେଖି ଶିବଙ୍କ ଦ୍ୱାରପାଳମାନେ ମଧ୍ୟ ଦେବୀଙ୍କୁ ଚିହ୍ନି ପାରିଲେ ନାହିଁ । ଦେବୀ କୌଣସିମତେ ନିଜର ପରିଚୟ ଦେଇ ଭିତରକୁ ଗଲେ । ଶିବ ଦେବୀଙ୍କର ସ୍ୱର୍ଣ୍ଣକମଳକ ପରି ରୂପ ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେହିଦିନଠାରୁ ଶିବଶିବା ହରଗୌରୀ ନାମରେ କଥିତ ହେଲେ ।

ଏହା ଶୁଣି ଶୌନକ ପଚାରିଲେ—"ସୂତ ମହର୍ଷେ ! ଆପଣ ଆମକୁ ଗୋଟିଏ ସୁନ୍ଦର ଆଖ୍ୟାୟିକା ଶୁଣାଇଲେ । ଆମ ମନରେ ଆହୁରି ଗୋଟିଏ ଶଙ୍କା ଉତ୍ପନ୍ନ ହୋଇଛି । ତା' ହେଉଛି— କେତେକ କହୁଛନ୍ତି—ପାର୍ବତୀ ଷଡ଼ାନନ କାର୍ତ୍ତିକେୟ ତଥା ସିଦ୍ଧିଦାତା ଗଣେଶଙ୍କ ଜନନୀ । ଅନ୍ୟ କେତେକଙ୍କ ମତରେ ତାଙ୍କର କୌଣସି ସନ୍ତାନ ନ ଥିଲା । ଏହି ମତ ଦୁଇଟିରୁ କେଉଁଟି ଠିକ୍ ?"

ସୂତମହର୍ଷି କହିଲେ—"ମହାଭାଗ ଏ ଦେବତାମାନଙ୍କ ଚରିତ ସମ୍ବନ୍ଧରେ ଆପଣମାନେ କିଛି ପଚାରନ୍ତୁ ନାହିଁ । ଆପଣମାନେ ଯାହା ଶୁଣିଛନ୍ତି, ଦୁଇଟିଯାକ ସତ୍ୟ । ଷଡ଼ାନନ କାର୍ତ୍ତିକେୟ ଶିବଙ୍କ ଔରସରୁ ଜାତ ହୋଇଛନ୍ତି । ସେହି ଅମୋଘ ଶିବବୀର୍ଯ୍ୟ ଅଗ୍ନି, ଶରବଣ, କୃତ୍ତିକା ଓ ପାର୍ବତୀ ଧାରଣ କରିଥିଲେ । ତେଣୁ ଏହି ଷଡ଼ାନନ ସମସ୍ତଙ୍କର ପୁତ୍ରରୂପେ କଥିତ । ସେ ଦେବତାମାନଙ୍କର ସେନାପତି ହୋଇ ତାରକାସୁରକୁ ବଧ କରିଥିଲେ । ସେ ଆଖ୍ୟାନ ଅତ୍ୟନ୍ତ ମନୋରମ । ସେ ବିଷୟରେ ମୁଁ ଆପଣମାନଙ୍କୁ ଅନ୍ୟ ସମୟରେ ଶୁଣାଇବି ।

"ଗଣେଶଙ୍କ ଜନ୍ମ ସମ୍ବନ୍ଧରେ ମଧ୍ୟ ସେହିପରି ଗୋଟିଏ ଆଖ୍ୟାୟିକା ରହିଛି । ପାର୍ବତୀଦେବୀ ନିଜ ଶରୀରରୁ ମଳି ଛଡ଼ାଇ ଗୋଟିଏ ପୁରୁଷାକୃତି ବିଗ୍ରହ ନିର୍ମାଣ କରିଥିଲେହେଁ ମୁଣ୍ଡଟି ଗଜମସ୍ତକ କରିଥିଲେ । ଦେବୀ ପାର୍ବତୀ ସେହି ବିଗ୍ରହଟିକୁ ଗଙ୍ଗାରେ ପକାଇ ଦେଇଥିଲେ । ଗଙ୍ଗାଦେବୀ ପୁତ୍ରଟିକୁ ନିଜ ସଖୀଙ୍କର ସନ୍ତାନ ବୋଲି ମନେକରି ପାଳନ କରିଥିଲେ ।"

"ଏ ସମ୍ବନ୍ଧରେ ଆଉ ଗୋଟିଏ ଆଖ୍ୟାନ ରହିଛି । ପାର୍ବତୀଙ୍କ କୋଳରେ ପୁତ୍ରଟିଏ ଜନ୍ମ ହେବାର ଶୁଣି ଦେବତାମାନେ ନବଜାତ ସନ୍ତାନକୁ ଦେଖିବା ପାଇଁ ଆସିଲେ । ସମସ୍ତେ ପୁତ୍ରଟିକୁ ଦେଖି ହରଗୌରୀଙ୍କୁ ଅଭିବାଦନ ଜଣାଇବା ସଙ୍ଗେସଙ୍ଗେ ଶିଶୁଟିକୁ ଆଶୀର୍ବାଦ ଦେଇଥିଲେ । ଶନିଶ୍ଚର ମହ ଗ୍ରହ ଦେବଙ୍କ ପୁତ୍ର ଦର୍ଶନ ପାଇ କୌତୁହଳର ସହିତ ଆସିଥିଲେହେଁ ଶିଶୁଟିର ସମ୍ମୁଖରେ ନତମୁଖ ହୋଇ ରହିଲେ । ସେ ନିଜର ପତ୍ନୀଙ୍କ ଅଭିଶାପ ପାଇଁ କୌଣସି ବ୍ୟକ୍ତିଙ୍କୁ ପ୍ରସନ୍ନ ଦୃଷ୍ଟିରେ ଦେଖୁ ନଥିଲେ ।"

ଏହା ଶୁଣି ଶୌନକ ପଚାରିଲେ—"ମହାଭାଗ, ଶନିଙ୍କର ପତ୍ନୀ ତାଙ୍କୁ କି ଅଭିଶାପ ଦେଇଥିଲେ କି ?"

ଏହା ଶୁଣି କହିଲେ ସୂତମହର୍ଷି—"କ'ଣ ଆଉ ତୁମମାନଙ୍କୁ କହିବି ? ମଣିଷ ସମସ୍ତଙ୍କୁ ଏପରିକି, ବିଷଧର ସର୍ପକୁ ମଧ୍ୟ ବଶ କରିପାରିବ; କିନ୍ତୁ ନିଜ ଘରଣୀକୁ ବଶ କରିବା ଆଦୌ ସହଜ ନୁହେଁ । ତୁମେମାନେ ଜାଣିଛ, ଶନିଶ୍ଚର ଚିତ୍ରରଥ ଗନ୍ଧର୍ବଙ୍କ କନ୍ୟାକୁ ବିବାହ କରିଥିଲେ; କିନ୍ତୁ ସେ କନ୍ୟା ଅତ୍ୟନ୍ତ ଦୁଷ୍ଟ ସ୍ୱଭାବର ଥିଲା ।

"ଦିନେ ଶନିଶ୍ଚର ତଳକୁ ମୁହଁ ପୋତି ଭଗବଦ୍ ଧ୍ୟାନରେ ମଗ୍ନ ରହିଥିଲେ । ଏହି ସମୟରେ ଗନ୍ଧର୍ବକନ୍ୟା ବେଶଭୂଷଣରେ ସଜ୍ଜିତା ହୋଇ ଅତ୍ୟନ୍ତ ଗର୍ବର ସହିତ ନାଚକୁଦ ଆସି ଶନିଶ୍ଚରଙ୍କ ଆଗରେ ଉଭା ହେଲେ । ବିଚରା ଶନିଶ୍ଚର ଭଗବତ୍ ପଦାରବିନ୍ଦରେ ଧ୍ୟାନ କରୁଥିବାରୁ, ସେ ଉପରକୁ ମୁହଁ ଟେକି ପତ୍ନୀର ସୌନ୍ଦର୍ଯ୍ୟ ଆଡ଼କୁ ଚାହିଁଲେ ନାହିଁ । ଏତିକରେ ଗନ୍ଧର୍ବବାଳା ରାଗରେ ଜଳିଯାଇ ଶନିଶ୍ଚରଙ୍କୁ ଅଭିଶାପ ଦେଇ କହିଲେ—"ତୁମେ ଏଡ଼େ ଅନ୍ୟମନସ୍କ ! ତୁମର ଟିକିଏ ସୌନ୍ଦର୍ଯ୍ୟଜ୍ଞାନ ନାହିଁ ? ମୁଁ କେତେ ଆଶା କରି ବେଶଭୂଷଣରେ ସଜ୍ଜିତା ହୋଇ ତୁମର ପାଖକୁ ଧାଇଁ ଆସିଥିଲି ଟିକିଏ ପ୍ରଶଂସା ଶୁଣିବା ପାଇଁ । ତୁମେ ଏଡ଼େ ଅପଦାର୍ଥ ଯେ, ପ୍ରଶଂସା କରିବା ତ ଦୂରର କଥା, ଥରେ ହେଲେ ମୁହଁ ଟେକି ମୋଆଡ଼କୁ ଚାହିଁଲ ନାହିଁ । ଆଜିଠାରୁ ତୁମେ ଯାହାକୁ ଚାହିଁବ ସେ ଜଳିଯିବ ।"

ସେହିଦିନଠାରୁ ଶନିଶ୍ଚରଙ୍କ ଦୃଷ୍ଟି ସମସ୍ତଙ୍କ ପ୍ରତି ମାରାତ୍ମକ ହୋଇ ଉଠିଲା ।

"କିନ୍ତୁ ପାର୍ବତୀ ଶନିଙ୍କର ଅବସ୍ଥା ଜାଣି ନଥିଲେ । ତେଣୁ ସେ କହିଲେ—"ସମସ୍ତେ ମୋ ପୁଅକୁ ଦେଖି ପ୍ରଶଂସା କଲେ; କିନ୍ତୁ ତୁମେ ଥରେ ହେଲେ ତା'ଆଡ଼କୁ ଆଡ଼ଆଖିରେ ମଧ୍ୟ ଚାହିଁଲ ନାହିଁ ?"

"ମୁଁ କ'ଣ କରିବି ମାଆ ! ମୋର ଦୁଷ୍ଟାପତ୍ନୀ ମୋତେ ଅଭିଶାପ ଦେଇଛି ଯେ, ମୁଁ ଯାହାକୁ ଚାହିଁବି, ତା'ର ଶିର ଜଳିଯିବ ।" ଅନୁପାୟ ଭାବରେ ଉତ୍ତର ଦେଲେ ଶନିଶ୍ଚର ।

ଏହା ଶୁଣି କହିଲେ ପାର୍ବତୀ—"ହୁଁ···ମୁଁ....! ସ୍ୱାମୀ ସ୍ତ୍ରୀ ମଝିରେ ଏମିତି କେତେ କ'ଣ କୁହାକୁହି ହୁଏ । ସେଥିରେ କ'ଣ ସତ୍ୟତା ଥାଏ ? ତୁମେ ମୋ ପୁଅକୁ ଥରେ ଚାହିଁ ଦେଖିଲ, କିଛି କହିବନାହିଁ ।"

ପାର୍ବତୀଙ୍କ କଥାରେ ଶନିଶ୍ଚର ବାଧ୍ୟ ହୋଇ ନିଜ ଆଖି କୋଣରେ ପିଲାଟିର ଶିର ଉପରେ ଦୃଷ୍ଟିପାତ କରିବାମାତ୍ରେ ପୁତ୍ରଟିର ଶିରଟି ଜଳି ଭସ୍ମ ହୋଇଯିବା ସଙ୍ଗେ ସଙ୍ଗେ ସେଥିରୁ ଗୋଟିଏ ଜ୍ୟୋତି ନିର୍ଗତ ହୋଇ ବିଷ୍ଣୁଙ୍କ ଶରୀରରେ ଲୀନ ହୋଇଗଲା । ଏହା ଦେଖି ପାର୍ବତୀ ବ୍ୟାକୁଳ ହୋଇ କ୍ରନ୍ଦନ କଲେ । ତାଙ୍କର କରୁଣ କ୍ରନ୍ଦନ ଶୁଣି ଭଗବାନ୍ ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ବିରାଜମାନ କରି ପୁଷ୍ପଭଦ୍ରା ନଦୀତଟକୁ ଗଲେ । ସେଠାରେ ଗୋଟିଏ ମାଈହାତୀ ପ୍ରସବ କରିଥିଲା । ପିଲା ହାତୀଟି ଦୂରରେ ପଡ଼ିଥିଲା ଏବଂ ତା ମାଆ ଟିକିଏ ଦୂରରେ ଶୋଇଥିଲା । ବିଷ୍ଣୁ ଏହା ଦେଖି ଶ୍ରେଷ୍ଠ ହାତୀଟିର ମୁଣ୍ଡଟି କାଟି ଆଣି ପାର୍ବତୀଙ୍କ ଶିଶୁପୁତ୍ରର ମୁଣ୍ଡରେ ଯୋଡ଼ିଦେଲେ ତାକୁ ଦେବଗଣଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ଘୋଷଣା କଲେ । ପୁତ୍ରଟି ଅସୁନ୍ଦର ହୋଇଥିଲେହେଁ ବିଷ୍ଣୁଙ୍କ ବରଦାନ ଫଳରେ ଦେବଗଣଙ୍କ ମଧ୍ୟରେ ଅଗ୍ରପୂଜ୍ୟ ହୋଇଥିବାରୁ ପାର୍ବତୀ ମନେ ମନେ ସନ୍ତୋଷ ଲଭିଜଲେ ।"

ଏହା ଶୁଣିବା ପରେ ଶୌନକ ପଚାରିଲେ—"ମହର୍ଷି, କାର୍ତ୍ତିକେୟ ଥାଉଁ ଥାଉଁ ଗଣେଶ ଅଗ୍ରପୂଜ୍ୟ ହେଲେ କିପରି ?"

"ମୁନିବୃନ୍ଦ", କହିଲେ ସୂତମୁନି—"ଏ ସମ୍ବନ୍ଧରେ ମଧ୍ୟ ଗୋଟିଏ ପୌରାଣିକ ଆଖ୍ୟାନ ରହିଛି । ପାର୍ବତୀଙ୍କର ପୁତ୍ର କାର୍ତ୍ତିକେୟ ଓ ଗଣେଶଙ୍କ ପାଇଁ ଦେବତାମାନେ ଗୋଟିଏ ଅମୃତ ଲଡ଼ୁ ପ୍ରସ୍ତୁତ କରି ପଠାଇ ଦେଲେ । ଗୋଟିଏ ଲଡ଼ୁ ଆସିଥିବାରୁ, ପାର୍ବତୀ କେଉଁ ପୁତ୍ରକୁ ଦେବେ ତାହା ସ୍ଥିର କରି ପାରିଲେନାହିଁ । ସେହି ପୁତ୍ର ଦୁହିଙ୍କ ମଝିରୁ କେହି ଫାଳେ ଲଡ଼ୁ ନେବାକୁ ଇଚ୍ଛା କଲେନାହିଁ । ତେଣୁ ମାତା ପାର୍ବତୀ ଗୋଟିଏ ଉପାୟ ଚିନ୍ତା କରି କହିଲେ- "ତୁମ ଦୁହିଁଙ୍କ ମଧ୍ୟରେ ଯେ ଅତ୍ୟନ୍ତ ଧର୍ମାତ୍ମା ବୋଲି ପ୍ରମାଣିତ ହେବ, ସେହି କେବଳ ଏହି ଲଡ଼ୁଟି ପାଇବ ।"

କାର୍ତ୍ତିକେୟ ଭାବିଲେ—"ତୀର୍ଥ ଭ୍ରମଣ କରିବା ହେଉଛି ଶ୍ରେଷ୍ଠ ପୁଣ୍ୟକାର୍ଯ୍ୟ । ତାହା ଫଳରେ ବ୍ୟକ୍ତି ପୁଣ୍ୟାତ୍ମାରୂପେ ପରିଗଣିତ ହୁଏ । ତେଣୁ ସେ ମୟୂର ବାହନରେ ପୃଥିବୀ ପ୍ରଦକ୍ଷିଣ କରି ସମସ୍ତ ତୀର୍ଥ କ୍ଷେତ୍ରରେ ସ୍ନାନ, ଦାନ ଓ ଦର୍ଶନ କରିଥିଲେ । ଗଣେଶ କିନ୍ତୁ ଥିଲେ ବୁଦ୍ଧିମାନ୍ । ସେ କୁଆଡ଼େ ନଯାଇ ମାତାପିତାଙ୍କୁ ପରିକ୍ରମା କରି ଶ୍ରଦ୍ଧା ଓ ଭକ୍ତିର ସହିତ ପ୍ରଣାମ କଲେ । କାର୍ତ୍ତିକେୟ ଆସିବାବେଳକୁ ଗଣେଶ ଶିବଙ୍କ ସମ୍ମୁଖରେ ହାତ ଯୋଡ଼ି ଛିଡ଼ା ହୋଇଥିଲେ । ଷଡ଼ାନନ ନିଜ ଦକ୍ଷତା ସମ୍ବନ୍ଧରେ ବ୍ୟାଖ୍ୟାନ କରି ଲଡ଼ୁଟି ତାଙ୍କର ପ୍ରାପ୍ୟ ବୋଲି ଜଣାଇଲେ । ଏହା ଶୁଣି ମାତା ପାର୍ବତୀ ଦେବୀ କହିଲେ—"ବାପା, ଏ ଲଡ଼ୁଟିକୁ ଯେ ଖାଇବ, ସେ ଜଣେ ଅଦ୍ଭୁତକର୍ମୀ ବିଦ୍ୱାନ୍, ଲେଖକ, ଶାସ୍ତ୍ରବିତ୍ ତଥା

ଜ୍ଞାନବିଜ୍ଞାନର ପାରଙ୍ଗମ ହେବ । ଏହାର ଅଧିକାରୀ ହେଉଛନ୍ତି—ଶ୍ରୀମାନ୍ ଗଣେଶ । କାରଣ ଘରେ ରହିଥିବା ପିତାମାତାଙ୍କୁ ଅଭ୍ୟର୍ଥନା ନ କରି ଯେଉଁ ବ୍ୟକ୍ତି ବାହାରେ ବୁଲି ତୀର୍ଥ ଭ୍ରମଣପୂର୍ବକ ପୁଣ୍ୟାଚରଣ କରିବାକୁ ଇଚ୍ଛାକରେ, ତା'ର ତୀର୍ଥଯାତ୍ରା ନିଷ୍ଫଳ ହୋଇଥାଏ । କୋଟି କୋଟି ତୀର୍ଥ ଅପେକ୍ଷା ମାତାପିତା ହେଉଛନ୍ତି ଶ୍ରେଷ୍ଠ । ଗଣେଶ ମାତାପିତାଙ୍କୁ ସମ୍ମାନ ପ୍ରଦର୍ଶନ କରିଥିବାରୁ, ସେ ଅମୃତ ଲଡ଼ୁଟି ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି ।”

ପାର୍ବତୀଙ୍କ କଥାକୁ ମଧ୍ୟ ମହାଦେବ ତାଙ୍କ ସମର୍ଥନ କରାଇ କହିଲେ—“ମୁଁ ଆଶୀର୍ବାଦ କରୁଛି, ଆଜିଠାରୁ ଗଣେଶ ଗଣାଧିପ ରୂପରେ ପ୍ରଥମ ପୂଜାର ଅଧିକାରୀ ହେବ । ତା'ର ଅର୍ଚ୍ଚନା କରି ସମସ୍ତେ ବିଘ୍ନବିନାଶ କରି ପାରିବେ ।

ଏହା ଶୁଣି ଋଷି ଶୌନକ ମନରେ ଶଙ୍କା କରି ପଚାରିଲେ—“ସୂତ ମହୋଦୟ, ମାତା ପାର୍ବତୀ ଗଣେଶଙ୍କ ପ୍ରତି ପକ୍ଷପାତ ବ୍ୟବହାର କଲେ ବୋଲି ଆମର ଧାରଣା ହେଉଛି । ବିଶେଷତଃ ସେ ମାତା ହୋଇ କାର୍ତ୍ତିକେୟଙ୍କ ପ୍ରତି ଦୟା ପ୍ରଦର୍ଶନ କଲେନାହିଁ କାହିଁକି ?”

ଏହା ଶୁଣି କହିଲେ ସୂତ ମୁନି—“ମୁନିବର, ଦୟା ଓ ନ୍ୟାୟ, ଦୁଇଟି ପୃଥକ୍ କଷଟିରେ କଷି ଯାଇଥାଏ । ପାର୍ବତୀ ହେଉଛନ୍ତି ଜଗଜ୍ଜନନୀ ବିଶ୍ୱବ୍ରହ୍ମାଣ୍ଡର ସମସ୍ତେ ତାଙ୍କର ସନ୍ତାନ । ସେ ତୁଳନା କରି ମଙ୍ଗଳ ଲାଗି ଅବଲମ୍ବନ କଲେ ଅହୋରାତ୍ର କୃତି ପ୍ରସ୍ତୁତ ହୁଅନ୍ତି । ଦେଖ ପାର୍ବତୀଙ୍କର ଅସୀମ ଦୟା ଦର୍ଶକରେ ଗୋଟିଏ ଉପାଖ୍ୟାନ ଆପଣମାନଙ୍କୁ ଶୁଣାଉଛି । ଥରେ ମାତା ପାର୍ବତୀ ଗୋଟିଏ ପୁଷ୍କରିଣୀରେ ସ୍ନାନ କରୁଥିବା ସମୟରେ ଲକ୍ଷ୍ୟ କଲେ, କୁମ୍ଭୀରଟିଏ ଗୋଟିଏ ଶିଶୁ ପିଲାକୁ ମୁହଁରେ କାମୁଡ଼ି ଧରିଛି । ପିଲାଟିର କରୁଣ ଚିତ୍କାର ଶୁଣି ମାତା ପାର୍ବତୀଙ୍କ ହୃଦୟ ଦୟାରେ ବିଗଳିତ ହୋଇ ଉଠିଲା । ସେ ମିନତିଭରା କଣ୍ଠରେ କହିଲେ—“ଗ୍ରାହରାଜ, ଏହି କୋମଳ ବାଳକଟିକୁ ତୁମେ ଛାଡ଼ିଦିଅ ।”

କୁମ୍ଭୀର କହିଲା—“ଦେବି ! ମୋର ଅପରାଧ କଅଣ ? ପ୍ରଜାପତି ମୋ ପାଇଁ ଏହି ବିଧାନ କରିଅଛନ୍ତି । ମୁଁ ଏହି ଗଭୀର ଜଳରେ ପଡ଼ିଥାଏ । ଯେ ମୋ ପାଖକୁ ଅନାୟାସରେ ଆସେ, ମୁଁ ତାକୁ ଭକ୍ଷଣ କରେ । ଆଜିକୁ ଦଶଦିନ ହେଲା ମୁଁ ଉପବାସରେ ରହିଛି । ବିଧାତା ମୋ ପାଇଁ ଏହି ଆହାରଟି ପଠାଇଛନ୍ତି । ଏହାକୁ ଭକ୍ଷଣ କରି ମୁଁ ମୋର କ୍ଷୁଧା ନିବାରଣ କରିବ ।”

“ଗ୍ରାହରାଜ, ତୁମ ମନରେ ଟିକିଏ ହେଲେ ଦୟା ଆସୁନାହିଁ ? ଏତେ ସୁକୁମାର ବାଳକଟିକୁ ଖାଇଲେ କ'ଣ ତୁମର କ୍ଷୁଧା ଚିରଦିନ ଲାଗି ତୃପ୍ତ ହୋଇଯିବ ?” କହିଲେ ଜଗଦମ୍ବା ।

"ଦେବ" ! କହିଲା କୁମ୍ଭୀର—"ଶାଇ ଯଦି ସୁକୋମଳ ଦୂର୍ବାଦଳ ପ୍ରତି ଦୟା-ପ୍ରଦର୍ଶନ କରେ, ତେବେ ତା'ର କ୍ଷୁଧା ନିବାରଣ ହେବ କିପରି ? ପ୍ରତ୍ୟେକ ପ୍ରାଣୀ ନିଜର କ୍ଷୁଧା ନିବାରଣ ପାଇଁ କେତେ କ'ଣ କରୁଛନ୍ତି । ମୋର ପରି ଅନେକ କେତେ ଜୀବ ଅନ୍ୟ ଜୀବର ମାଂସରେ କ୍ଷୁଧା ନିବାରଣ କରୁଛନ୍ତି । ମୋର ଦୟା ପ୍ରଦର୍ଶନରେ ବିଶ୍ୱରେ କେଉଁ ନୂତନ ପରମ୍ପରା ସୃଷ୍ଟି ହେବ ଯେ ?"

କୁମ୍ଭୀରର ଯୁକ୍ତିଯୁକ୍ତ କଥା ଶୁଣି କହିଲେ ମାତା ପାର୍ବତୀ—"ତୁମର ଉକ୍ତି ସତ୍ୟ ! ତଥାପି ସଂସାରରେ ଦୟାର ମହତ୍ତ୍ୱ ରହିଛି । ମୁଁ ତୁମକୁ ପ୍ରାର୍ଥନା କରୁଛି, ତୁମେ ପିଲାଟିକୁ ଛାଡ଼ିଦେଇ, ତା ବଦଳରେ ମୋତେ ଖାଇ ତୁମର କ୍ଷୁଧା ନିବାରଣ କର ।"

କୁମ୍ଭୀର ସଙ୍ଗେସଙ୍ଗେ ଉତ୍ତର ଦେଇ କହିଲା—"ଦେବ ! ମୁଁ ଆପଣଙ୍କୁ କେବେହେଲେ ଖାଇପାରିବ ନାହିଁ; କିନ୍ତୁ ଆପଣ ଯଦି ନିଜର କୌଣସି ଅତି ପ୍ରିୟବସ୍ତୁକୁ ମୋତେ ଦେଇ ପାରିବେ, ତେବେ ମୁଁ ଏହି ପିଲାଟିକୁ ଛାଡ଼ିଦେଇ ପାରିବି । ଆପଣ ହିମାଳୟର ସର୍ବୋଚ୍ଚ ଶୃଙ୍ଗରେ ବସି ଯେଉଁ ତପସ୍ୟା କରିଛନ୍ତି, ସେହି ତପସ୍ୟାର ପୁଣ୍ୟକୁ ଯଦି ମୋତେ ଅର୍ପଣ କରିଦେଇ ପାରିବେ, ତେବେ ମୁଁ ଶିଶୁଟିକୁ ନ ଖାଇ ଛାଡ଼ିଦେବ ।"

ଏହା ଶୁଣିବାମାତ୍ରେ ଜଗଦମ୍ବା ଆନନ୍ଦରେ ଅଧୀର ହୋଇ କହିଲେ—"ଗ୍ରାହରାଜ, କେବଳ ଏହି ଜନ୍ମର ତପସ୍ୟାର ପୁଣ୍ୟ ନୁହେଁ, ମୁଁ ଜନ୍ମଜନ୍ମାନ୍ତରର ତପଃଫଳ ମଧ୍ୟ ତୁମରି ହାତରେ ସଂକଳ୍ପପୂର୍ବକ ଅର୍ପଣ କରିବାକୁ ପ୍ରସ୍ତୁତ ଅଛି !" ଏହା କହି ଦେବୀ ପାର୍ବତୀ ହାତରେ ଜଳ ଓ କୁଶ ଗ୍ରହଣ କରି କୁମ୍ଭୀର ଉଦ୍ଦେଶ୍ୟରେ ସଂକଳ୍ପପୂର୍ବକ ତପସ୍ୟାର ଫଳ ଅର୍ପଣ କଲେ । ଜଗଦମ୍ବିକାଙ୍କ ତପସ୍ୟାର ପୁଣ୍ୟ ଲାଭ କରି କୁମ୍ଭୀର ସୂର୍ଯ୍ୟଙ୍କ ପରି ତେଜସ୍ୱୀ ହୋଇ ଉଠିଲା । ସେ ପିଲାଟିକୁ ଛାଡ଼ି ଦେଇ ଦିବ୍ୟରୂପ ଧାରଣ କରି କହିଲା—"ଦେବ ଆପଣ ଗୋଟିଏ ସାମାନ୍ୟ ଶିଶୁପାଇଁ ଚିରସଞ୍ଚିତ ପୁଣ୍ୟ ବୃଥାଟାରେ ତ୍ୟାଗ କରିଦେଲେ ।"

ଦେବୀ ପାର୍ବତୀ ପିଲାଟିକୁ ସ୍ନେହରେ କୁଣ୍ଢାଇ ପକାଇ କହିଲେ—"ଗ୍ରାହରାଜ, ମୁଁ ପୁଣି ତପସ୍ୟା କରି ପୁଣ୍ୟାର୍ଜନ କରିପାରିବ, କିନ୍ତୁ ଏ' ସୁକୋମଳ ଶିଶୁଟି ତ ପ୍ରାଣ ପାଇଲା !"

ଏହା ଶୁଣିବାମାତ୍ରେ କୁମ୍ଭୀର ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା ଏବଂ ଶିଶୁଟି ଆପଣା ଇଚ୍ଛାରେ ନିଜ ଘରକୁ ପଳାଇଗଲା । ଏହି ସମୟରେ ଶିବ ସେଠାରେ ଆବିର୍ଭାବ ହୋଇ ଗଲେ । ତାଙ୍କୁ ଦେଖିବାମାତ୍ରେ କହିଲେ ଜଗଦମ୍ବିକା—"ଦେବ ଆପଣ ମୋତେ ତପସ୍ୟା କରିବାକୁ ଅନୁମତି ପ୍ରଦାନ କରନ୍ତୁ । ମୁଁ ତପଃହୀନ ହୋଇ ଯାଇଛି ।"

"ଦେବି ! ତୁମେ କେଉଁ ପାପ କରି ତପଃହୀନ ହୋଇଯାଇଛ ?" କହିଲେ ଶିବ ।

ପାର୍ବତୀ ବିନୀତ ଭାବରେ କହିଲେ—"ଦେବାଧିଦେବ, ମୁଁ କୌଣସି ପାପ କରି ନାହିଁ । ଗୋଟିଏ ଶିଶୁକୁ କୁମ୍ଭୀର ମୁଖରୁ ଉଦ୍ଧାର କରିବାକୁ ଯାଇ, ମୁଁ ମୋର ତପସ୍ୟାର ଫଳ ତାହାକୁ ଅର୍ପଣ କରିଛି ।"

ଏହା ଶୁଣି ହସି ହସି କହିଲେ ସଦାଶିବ —"ଦେବି ! ଦୟା ପ୍ରଦର୍ଶନରେ ପୁଣ୍ୟ କ୍ଷୟ ହୁଏନାହିଁ । ପରୋପକାର ଲାଗି ଅର୍ପିତ ପୁଣ୍ୟଫଳ ନଷ୍ଟ ହୁଏନାହିଁ; ବରଂ ତାହା ଦ୍ୱିଗୁଣିତ ହୋଇଥାଏ । ସେ କୁମ୍ଭୀର ଆଉ କେହି ନୁହେ, ମୁଁ ଥିଲି । ତୁମ ମାତୃହୃଦୟର ପରୀକ୍ଷା କରିବାପାଇଁ ମୁଁ କୁମ୍ଭୀର ଓ ଶିଶୁ ରୂପ ଧାରଣ କରିଥିଲି । ଉଭୟ ଭକ୍ଷ୍ୟ ଓ ଭକ୍ଷକର ସ୍ୱରୂପ ଧାରଣ କରି ମୁଁ ତୁମକୁ ପରୀକ୍ଷା କରୁଥିଲି ଏବଂ ତୁମେ ଏହି ପରୀକ୍ଷାରେ ଆଶାତୀତ ଭାବରେ ସଫଳତା ଲାଭ କଲ । ତୁମେ ତୁମର ତପସ୍ୟାର ଫଳ ମୋତେ ହିଁ ଅର୍ପଣ କରିଛ । ମୋତେ ଅର୍ପଣ କରିଥିବା ବସ୍ତୁ ଆଦୌ ନଷ୍ଟ ହୁଏନାହିଁ । ବରଂ ତାହା ଅକ୍ଷୟ ହୋଇ ଯାଇଛି । ଦେବି, ଦୟାର ମୂଳ ଚେର ଅନେକ ଗଭୀରରେ ରହିଥାଏ । କେହି ଚେଷ୍ଟା କରି ମଧ୍ୟ ତାହା ଉନ୍ମୂଳନ କରି ପାରେ ନାହିଁ । ତୁମେ ତୁମର ଦୟା ଓ ଦାକ୍ଷିଣ୍ୟ ବଳରେ ମୋତେ ଜୟ କରି ନେଇଛ ।" ଏହା କହି ଶିବ ସେହିଦିନଠାରୁ ଦେବୀ ଜଗଦମ୍ବିକାଙ୍କୁ ନିଜର ଅର୍ଦ୍ଧଅଙ୍ଗ ପ୍ରଦାନ କଲେ ।

ମହର୍ଷି ସୂତ କହିଲେ—"ଶିବଙ୍କର ଚରିତ ଅନନ୍ତ । ତାହା କେହି ଭାଷାରେ ବର୍ଣ୍ଣନା କରି ପାରିବେ ନାହିଁ । ସ୍ୱୟଂ ସରସ୍ୱତୀ ମଧ୍ୟ ସମଗ୍ର ସମାରକୁ କାଗଜ, ସୁମେରୁ ପର୍ବତକୁ କାଳୀ ଓ ଅରଣ୍ୟାନୀର ବୃକ୍ଷ ସମୂହକୁ ଯଦି ଲେଖନୀରୂପେ ବ୍ୟବହାର କରି ଶିବଗୁଣ ବର୍ଣ୍ଣନା କରି ବସନ୍ତି, ତେବେ ମଧ୍ୟ ତାହା ଶେଷ ହେବନାହିଁ । ତେଣୁ ଆମେମାନେ ଯେତିକି ଶୁଣୁଅଛି, ସେଇଥିରେ ସନ୍ତୁଷ୍ଟ ହୋଇ ତାକୁ ମନନ କରିବା ଉଚିତ । ଯେଉଁ ବ୍ୟକ୍ତି ଶିବଙ୍କ ମହିମା ଗାନ କରେ, ଶୁଣେ କିମ୍ବା ଅନ୍ୟକୁ ଶୁଣାଏ, ପ୍ରଭୁ ସଦାଶିବ ତାଙ୍କ ତ୍ରିଶୂଳାଘାତରେ ସେହି ବ୍ୟକ୍ତିର ସମସ୍ତ ପାପ ବିନଷ୍ଟ କରିଦିଅନ୍ତି । ଏଥିରେ ସନ୍ଦେହ ନାହିଁ ।

## ସ୍ତୁତି

"ଘୁମିନ୍ ପଣ୍ଡୁପଟ ତୁଣ୍ଡେ ବାସରେଙ୍କ ପାଶ ଛୁଡ଼ାଓ ।
ଜଗଦମ୍ବା ! ମାଁ ! ଉମା କଣ୍ଠକୁଂ ହୃଦୟ ଲଗାଓ ।।
ଉଟଟକ୍ୟା ଜଗମହିଁ ଜନକ-ଜନନୀ-ଚରଣ-ମହିଁ ବଢେ ;
ମାଁ ଅଙ୍କ ଗୋଦ ବିଠାୟ୍ କର୍ନି-ମୁକ୍ତ ଭୁତ ଡେଦା ଲୀଜେ ।।
ଯଦ୍ୟପି ହୌଂ ଅତି ଅଧମ ହୁଁ ତଉ ପିତା ! ଅପନାଇ ଲୀଜେ ।
କୈଷ୍ଣା ! ପାବନ ଚରଣ ସ୍ନେହ, ହୁଁ ହୃଦୟତେଂ ଜପନାଇ ଲୀଜେ ।।"

# ଅଧର୍ମବଂଶ

"ମୃଷାଽଧର୍ମସ୍ୟ ଭାର୍ଯ୍ୟାଽଽସୀଦ୍ଦମ୍ଭଂ ମାୟାଂ ଚ ଶତ୍ରୁହନ୍ ।
ଅସୂତମିଥୁନଂ ତତ୍ତୁ ନିର୍ଋତି ଗୃହେଽପ୍ରଜଃ ॥"

(ଭାଗବତ ୪।୮।୨)

ଛପ୍ପୟ

"ହେ ଅଧର୍ମ ବିଧି ପୁତ୍ର ମୃଷା ହେ ତାକୀ ଜାୟା ।
ଦ୍ୱୈ ତନକେଂ ସନ୍ତାନ ଦମ୍ଭ ସୁତ ପୁତ୍ରି ମାୟା ॥
ତେ ପତିପତ୍ନୀ ବନେ ଲୋଭ ଶଠତା ଦ୍ୱୈ ଜାୟେ ।
ଦମ୍ପତି ହ୍ୱୈ କେଂ ତନନି କ୍ରୋଧ ହିଂସା ଉପଜାୟେ ॥
ହିଂସା କ୍ରୋଧ ବିବାହ କରି, କଲି ଦୁରକ୍ତି ଜନି ସନ୍ତତି ।
ଅନ୍ୟ ଯୁଗନି ମେଂ କ୍ଷୀଣ ବଲ, ହୋହିଁ ବଲୀ କଲି ମେଂ ଅତି ॥"

ମୈତ୍ରେୟ ମୁନି କହୁଛନ୍ତି—"ହେ ବିଦୁର, ଅଧର୍ମର ସ୍ତ୍ରୀର ନାମ ମୃଷା । ସେ ଦୁହିଙ୍କର ସଂସର୍ଗରୁ ଦମ୍ଭ ନାମକ ପୁତ୍ର ଏବଂ ମାୟା ନାମ୍ନୀ ପୁତ୍ରୀ ଜାତ ହୋଇଥିଲେ । ଅଧର୍ମର ଭାଇର ନାମ ନିର୍ଋତି; କିନ୍ତୁ ତା'ର କୌଣସି ସନ୍ତାନ ନଥିଲା; ତେଣୁ ସେ ଦୁହେଁ ଦମ୍ଭ ଓ ମାୟାଙ୍କୁ ପୋଷ୍ୟ ସନ୍ତାନ ରୂପେ ଗ୍ରହଣ କରିଥିଲେ ।"

ନିର୍ଗୁଣ, ନିର୍ବିକାର, ଶୁଦ୍ଧ, ସାମ୍ୟ ତଥା ଜ୍ଞାନରୁ ସୃଷ୍ଟି ସମ୍ଭବ ହୁଏ ନାହିଁ । ସୃଷ୍ଟି ଲାଗି ଆବଶ୍ୟକ ହୁଏ—ସଗୁଣ, କାମନା, ଅବିଦ୍ୟା, ବିଷମତା ଓ ମାୟା । ଭଗବାନଙ୍କଠାରେ ଏ'ସବୁ ଗୁଣ ଆସିଲା କିପରି ? ଯଦି ତାଙ୍କଠାରେ ଏ' ସମସ୍ତ ଗୁଣ ବିଦ୍ୟମାନ; ତେବେ ସେହି ପରମାତ୍ମା ଶୁଦ୍ଧ, ବୁଦ୍ଧ, ମୁକ୍ତ, ଅଜ, ନିର୍ବିକାର, ନିର୍ଲେପ, ନିରାଧାର, ନିରଞ୍ଜନ ନିର୍ଦ୍ୱନ୍ଦ୍ୱ ତଥା ନିର୍ଲେପ ହେଲେ କିପରି ? କାରଣ, ଏ' ଉପାଦାନର ଜନକ ସେ ନୁହନ୍ତି । ସେ ଏହି ବିକାର ପଦାର୍ଥଗୁଡ଼ିକୁ ଜାତ କଲେ କିପରି ?

ସଂସାରରେ କୌଣସି ବସ୍ତୁ ନିରାଧାର ନୁହେଁ । ତାହାରକୁ ନିରାଧାର କହିବା ଭଳି ମନୋଭାବ ତ୍ୟାଗ କରିଦିଅ । ଦେଖିବ, ସବୁଠାରେ ସବୁ ଜିନିଷ ତୁମକୁ ସୁନ୍ଦର ଦେଖାଯିବ । ପ୍ରତ୍ୟେକ ବସ୍ତୁ ପରମେଶ୍ୱରଙ୍କଠାରୁ ସୃଷ୍ଟି । ଭଗବାନ୍ ମଙ୍ଗଳମୟ ଶିବ । ତାଙ୍କଠାରୁ ଅଶିବ ଅର୍ଥାତ୍ ଅମଙ୍ଗଳର ଉତ୍ପତ୍ତି ସମ୍ଭବ ହୋଇ ନ ପାରେ । ଯାହାର ମନ ଅପବିତ୍ର ହୋଇଯାଇଛି, ସେ ପ୍ରତ୍ୟେକ ବସ୍ତୁକୁ ଅପବିତ୍ର ବୋଲି ମନେ କରେ । ସଂସାରରେ କୌଣସି ବସ୍ତୁ ଅପବିତ୍ର ନୁହେଁ; ତାହା ଆମ ମନର ବିକାର ମାତ୍ର ।

ସୃଷ୍ଟି ପ୍ରକରଣକୁ ବୁଝାଇବା ଉଦ୍ଦେଶ୍ୟରେ ବିଦୁର ମୈତ୍ରେୟଙ୍କୁ କହିଲେ—"ମହର୍ଷେ, ଆପଣ ସ୍ୱାୟମ୍ଭୁବ ମନୁଙ୍କଠାରୁ ଜାତ ଆକୂତି, ଦେବହୂତି ଓ ପ୍ରସୂତି ଏହି ତିନି କନ୍ୟାଙ୍କ ବଂଶ ବିଷୟରେ କହିଛନ୍ତି । ଏହି ପ୍ରସଙ୍ଗରେ ଆପଣ ବ୍ରହ୍ମାଙ୍କର ଦଶଜଣ ମାନସ ପୁତ୍ର ମାରୀଚ ଆଦିଙ୍କ ବିଷୟରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ତେଣୁ ଆମେ ଜାଣିବାକୁ ଚାହୁଁଛୁ ଯେ, ବ୍ରହ୍ମାଙ୍କର ଅନ୍ୟ ଦଶଜଣ ପୁତ୍ର ଋଭୁ, ହଂସ, ଅରୁଣି, ଯତି ଆଦିଙ୍କ ବଂଶ ବିଷୟରେ କ'ଣ ହେଲା ? ଏ ସମ୍ବନ୍ଧରେ ଆପଣ କିଛି ବର୍ଣ୍ଣନା କରି ନାହାନ୍ତି ।

ଏହା ଶୁଣି ମୈତ୍ରେୟ ହସି ହସି କହିଲେ—"ହେ ବିଦୁର, ସଂସାର ହିଁ ହେଉଛି—ସୃଷ୍ଟି । କୌଣସି ବସ୍ତୁକୁ ଆପଣାର ବୋଲି ନ ଭାବିଲେ ସୃଷ୍ଟିର ପ୍ରପଞ୍ଚ ବଢ଼ିବ କିପରି ? ଏହି ଋଷିମାନେ ନିବୃତ୍ତି ମାର୍ଗର ଉପାସକ । ସନକ, ସନନ୍ଦନ, ଋଭୁ ଆଦି କୁମାରମାନେ ଊର୍ଦ୍ଧ୍ୱରେତା ବ୍ରହ୍ମଚାରୀ । ଏମାନେ ଭଗବାନ୍‌ଙ୍କ ମାୟାରୂପୀ ପ୍ରପଞ୍ଚରୁ ମୁକ୍ତ ଥିଲେ । ତେଣୁ ଏମାନଙ୍କର ବଂଶ ଆସିବ କୁଆଡ଼ୁ ?"

ତହୁଁ ବିଦୁର ପଚାରିଲେ—"ମହାରାଜ, ଏମାନଙ୍କ ବ୍ୟତୀତ ବ୍ରହ୍ମାଙ୍କର ଆହୁରି ଅନେକ ପୁତ୍ର ଥିଲେ । ବିଶେଷତଃ ଅଧର୍ମର ବର୍ଣ୍ଣନା ଆପଣ କରିନାହାନ୍ତି ।"

ସୂତ କହିଲେ – "ବିଦୁରଙ୍କ ପ୍ରଶ୍ନ ଶୁଣି ମୈତ୍ରେୟ ଅଧର୍ମର ବଂଶ ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ଉଦ୍ୟତ ହେଲେ ।"

ଏହା ଶୁଣି ଶୌନକ କହିଲେ—"ଏହି ଅଧର୍ମର ତତ୍ତ୍ୱ ବିଷୟରେ ଜାଣି ଆମର ଲାଭ କ'ଣ ? ଆମେମାନେ କେବଳ ଧର୍ମର ତତ୍ତ୍ୱ ଜାଣିବାକୁ ଚାହୁଁଛୁ ।"

ଏହା ଶୁଣି ସୂତ କହିଲେ—"ହେ ମୁନିଗଣ, ପ୍ରତ୍ୟେକ କ୍ଷେତ୍ରରେ ପ୍ରତ୍ୟେକର ବିଶେଷତ୍ୱ ରହିଛି । ନୋହିଲେ, ସୃଷ୍ଟିର ବିଶେଷତ୍ୱ କ'ଣ ରହିପାରିବ ? ଅଧର୍ମର ବୃଦ୍ଧି ନ ହେଲେ, ଧର୍ମର ସଂସ୍ଥାପକ ଭଗବାନଙ୍କ ସୃଷ୍ଟି ହେବ କିପରି ?"

"ସେଥିରେ ଆମର ଯାଏ ଆସେ କେତେ ? ଅଧର୍ମ ସହିତ ପରିଚିତ ହେଲେ ଆମର ବିଶେଷ କ'ଣ ଉପକାର ହେବ ?" କହିଲେ ଶୌନକ ।

ସୂତ ଏହା ଶୁଣି ହସି ହସି କହିଲେ—"ଅଜ୍ଞାନ ଓ ତ୍ୟାଗ, ଏ' ଦୁଇଟି ମଧ୍ୟରେ ବିଶେଷ ପାର୍ଥକ୍ୟ ରହିଛି । ଗୁଣ ଦୋଷ ନିର୍ବିଶେଷରେ ଯେଉଁମାନେ ତ୍ୟାଗ କରନ୍ତି,

ସେମାନଙ୍କର ସେହି ତ୍ୟାଗର ମହତ୍ତ୍ୱ ରହିଛି । ଧର୍ମ ଓ ଅଧର୍ମର ଗୁଣ ଦୋଷ ଜାଣି, ଅଧର୍ମକୁ ତ୍ୟାଗ କଲେ, ତା'ର ବିଶେଷ ମହତ୍ତ୍ୱ ରହିଛି । ବେଳେ ବେଳେ ଧର୍ମ ଅଧର୍ମର ସ୍ୱରୂପ ଧାରଣ କରିଥାଏ । ତେଣୁ ଅଧର୍ମର ସ୍ୱରୂପକୁ ଭଲ ଭାବରେ ଜାଣିବା ଏକାନ୍ତ ଆବଶ୍ୟକ । ମହର୍ଷି ମୈତ୍ରେୟ ବିଦୁରଙ୍କୁ ଅଧର୍ମର ସ୍ୱରୂପ ସମ୍ବନ୍ଧରେ ଯେପରି ବୁଝାଇଥିଲେ, ମୁଁ ସେ ବିଷୟ ଠିକ୍ ସେହିପରି ଭାବରେ ଆପଣମାନଙ୍କ ଆଗରେ ବର୍ଣ୍ଣନା କରୁଛି । ଆପଣମାନେ ତାହା ମନୋଯୋଗର ସହିତ ଶୁଣନ୍ତୁ ।"

ମୈତ୍ରେୟ ମୁନି କହିଲେ—"ହେ ବିଦୁର, ବ୍ରହ୍ମାଙ୍କ ପୃଷ୍ଠଦେଶରୁ ଅଧର୍ମ ଓ ପାପରୁ ଅସତ୍ୟର ଉତ୍ପତ୍ତି ହୋଇଛି । ଏ' ଦୁହେଁ ସମାନ ସ୍ୱଭାବର ଅଟନ୍ତି । ଅଧର୍ମ ମୃଷା (ମିଥ୍ୟା) ସହିତ ବିବାହ କରିଥିଲା । ତାଙ୍କଠାରୁ ଦମ୍ଭ ଓ ମାୟା ଉତ୍ପନ୍ନ ହୋଇଥିଲେ । ଉଭୟେ ପିତାମାତାଙ୍କ ଗୁଣ ଗ୍ରହଣ କରିଥିଲେ । ଦମ୍ଭ ବା ଅହଙ୍କାରରୁ ହିଁ ଅଧର୍ମର ଉତ୍ପତ୍ତି । ସେହିପରି ଅସତ୍ୟରୁ ମାୟାର ଅସ୍ତିତ୍ୱ ରହିଛି ।

ପରମ୍ପରାକ୍ରମେ ଯାହା ଚାଲିଆସୁଥାଏ, ପୁତ୍ର ପୌତ୍ରାଦିମାନେ ତା'ର ଅନୁକରଣ କରନ୍ତି । ତେଣୁ ଲୋଭ, କ୍ରୋଧ, ହିଂସା, କଟୁକ୍ତି, ପରନିନ୍ଦା ପ୍ରଭୃତି ସେହି ବଂଶର ଦାୟାଦ । ଭୟ ତଥା ମୃତ୍ୟୁ ମଧ୍ୟ ସେହି ଅଧର୍ମର ବଂଶଧର ।

ପରନିନ୍ଦାରୁ କଳି ଉତ୍ପନ୍ନ ହୋଇଛି ଏବଂ ଭୟରୁ ମୃତ୍ୟୁ ସମ୍ଭବ ହୋଇଥାଏ । ସେଥିରୁ ଯାତନା ଓ ନରକର ସୃଷ୍ଟି ।

ଏହାପରେ ପୁଣି ମୈତ୍ରେୟ କହିଲେ—"ବିଦୁର, ଅଧର୍ମର ବଂଶ ଅନେକ ବୃଦ୍ଧି ପାଇଛି । ମୁଁ ସେ ସମ୍ବନ୍ଧରେ ଆପଣଙ୍କ ଆଗରେ ଅତି ସଂକ୍ଷେପରେ ଏହା ବର୍ଣ୍ଣନା କଲି । ଏହାକୁ ଭଲ ଭାବରେ ମନନ କଲେ, ଆପଣମାନେ ଅଧର୍ମଠାରୁ ଦୂରେଇ ରହିବା ପାଇଁ ଚେଷ୍ଟା କରିବେ ।"

ଏହା ଶୁଣି କହିଲେ ବିଦୁର—"ମହର୍ଷେ, ଅଧର୍ମ ବିଷୟରେ ମନନ କଲେ ତାହା କିପରି ଆମଠାରୁ ଦୂରେଇ ରହିବ ଯେ ?"

ବିଦୁରଙ୍କ ସନ୍ଦେହ ମୋଚନ କରି କହିଲେ ମୈତ୍ରେୟ—"ଦେଖନ୍ତୁ ବିଦୁର ମହୋଦୟ ! ଏହି ଅଧର୍ମ ହେଉଛି ଚୋର ଓ ଠକ । ଚୋରର ସାହସ ଅସୀମ କିନ୍ତୁ ତା'ର ମନ ଅତ୍ୟନ୍ତ ଦୁର୍ବଳ । ତାକୁ ଚିହ୍ନି ନପାରିବା ପର୍ଯ୍ୟନ୍ତ ସେ ଘର ମଧ୍ୟରେ ଲୁଚି ରହିବାର ସୁଯୋଗ ପାଏ । ଚୋରକୁ ଦେଖି ପକାଇଲେ ବା ଚିହ୍ନି ପକାଇଲେ ସେ ପଳାଇ ଯାଇଥାଏ । ସେହିପରି ଅସତ୍ୟ, ଦମ୍ଭ, ମାୟା ପ୍ରଭୃତି ଅଧର୍ମର ବଂଶଧରମାନେ ହୃଦୟ ମଧ୍ୟରେ ଲୁଚି କରି ରହିଥାଆନ୍ତି । ସେମାନଙ୍କୁ ଚିହ୍ନି ପାରିଲେ, ସେମାନେ ଆଉ ସେଠାରେ ରହିପାରନ୍ତି ନାହିଁ ।"

ଏହା ଶୁଣି ଶୌନକ କହିଲେ—"ସୂତ ମହୋଦୟ, ତା'ହେଲେ ଆପଣ ଅଧର୍ମର ଉତ୍ପତ୍ତି ଓ ସ୍ୱରୂପ ସମ୍ବନ୍ଧରେ ଆମକୁ ସବିଶେଷ ବିବରଣୀ ଶୁଣାନ୍ତୁ ।"

ଶୌନକଙ୍କ ଆଗ୍ରହ ଶୁଣି କହିଲେ ସୂତ—"ମୁନିଗଣ, ଏ' ସୃଷ୍ଟି ହେଉଛି ଅନାଦି । ଏ ସୃଷ୍ଟିରେ କେତେବେଳେ କିଏ କେଉଁ ରୂପ ଧାରଣ କରୁଛି, ତାହା ଜାଣିବା ଅତ୍ୟନ୍ତ କଷ୍ଟସାଧ୍ୟ । ଗୋଟିଏ କଳ୍ପରେ ଯିଏ ଯେଉଁ ରୂପ ତଥା ନାମରେ ପରିଚିତ ହୋଇଥାଏ, ଅନ୍ୟ କଳ୍ପରେ ତା'ର ସ୍ୱରୂପ ଓ ନାମ ଭିନ୍ନ ହୋଇଥିବାର ଦେଖାଯାଏ । ସେହି ନିୟମରେ ଅଧର୍ମ ମଧ୍ୟ କଳ୍ପଭେଦରେ ଭିନ୍ନ ସ୍ୱରୂପ ଧାରଣ କରିଛି । ତାହା ସମ୍ବନ୍ଧରେ ମୁଁ ପୁରାଣରୁ ଗୋଟିଏ ଆଖ୍ୟାୟିକା ଆପଣମାନଙ୍କ ଆଗରେ ବର୍ଣ୍ଣନା କରୁଛି ।

"ଆପଣମାନେ ଜାଣନ୍ତି, ପ୍ରୟାଗଠାରେ ପ୍ରତ୍ୟେକ ମାଘ ଓ କାର୍ତ୍ତିକ ମାସରେ 'କଳ୍ପବାସ' ହେଉଛି । ବର୍ଷା ସମୟରେ ଗଙ୍ଗା ଯମୁନା ଯେଉଁ ଯେଉଁଠାରେ ନୂତନ ଭୂମି ସୃଷ୍ଟି କରନ୍ତି, ସେହି ସେହି ସ୍ଥାନକୁ 'କଳ୍ପ' କୁହାଯାଏ । ସେହି ନୂତନ ଭୂମିରେ ଏକମାସ ନିବାସ କରିବା ହେଉଛି—'କଳ୍ପବାସ' । କଳ୍ପବାସ ସମୟରେ ସେଠାରେ ଲୋକ ଗତାଗତ ତଥା ସାଧୁସନ୍ଥଙ୍କ ଅବସ୍ଥିତି ଖୁବ୍ ଦେଖାଯାଏ । ଗୋଟିଏ 'କଳ୍ପବାସ' ସମୟରେ ଯେଉଁଠାରେ ଗଭୀର ଜଳରାଶି ଦେଖାଯାଉଥାଏ, ଅନ୍ୟ କଳ୍ପବାସ ସମୟରେ ସେଠାରେ ବିସ୍ତୃତ ସ୍ଥଳଭାଗ ଉତ୍ପନ୍ନ ହୋଇଯାଏ ।

"ଏହି କଳ୍ପ ହେଉଛି—ବ୍ରହ୍ମାଙ୍କର ଏକ ଲୀଳା । ଗୋଟିଏ କଳ୍ପ ଆରମ୍ଭ ହେବାମାତ୍ରେ ସୂର୍ଯ୍ୟଙ୍କ ତେଜ ପ୍ରଖର ହୋଇ ପୃଥିବୀରୁ ଜଳରାଶି ଶୋଷଣ କରିନିଏ । ପ୍ରାଣୀମାନେ ଜଳବିନା ହାହାକାର କରନ୍ତି । ସେତିକବେଳେ ଏହି ପ୍ରୟାଗର ଗଙ୍ଗା ଯମୁନାର ଠିକ୍ ମଧ୍ୟଭାଗରେ 'ବେଣୀକୁଣ୍ଡ'ରୁ ଜଳସ୍ରୋତ ନିର୍ଗତ ହୁଏ । ସେହି କୁଣ୍ଡରୁ ଜଳ ନିର୍ଗତ ହୋଇ ସମୁଦ୍ର ଅଭିମୁଖେ ଧାବିତ ହୁଏ । 'ବେଣୀକୁଣ୍ଡ'ରୁ ଯେଉଁ ପ୍ରଥମ ଜଳସ୍ରୋତ ନିର୍ଗତ ହୁଏ, ତାହା ପ୍ରତିଷ୍ଠାନପୁର (ଝୁସୀ)ର 'ସମୁଦ୍ରକୂପ' ନାମରେ ବିଖ୍ୟାତ । ସେହି ସମୟରେ ସଂସାର ଜନମାନବ ଶୂନ୍ୟ ହୋଇଯାଏ । କେବଳ ବିଷ୍ଣୁ କଳ୍ପବଟର ଶାଖାରେ କ୍ରୀଡ଼ା କରୁଥାଆନ୍ତି । କଳ୍ପ ଶେଷରେ ବିଷ୍ଣୁଙ୍କ ନାଭିକମଳରୁ ବ୍ରହ୍ମା ଜାତ ହୋଇ ସୃଷ୍ଟି ରଚନାରେ ମନ ଦିଅନ୍ତି ।

"ଥରେ ବ୍ରହ୍ମା ସୃଷ୍ଟି କରିବା ଲାଗି ମନସ୍ଥ କରୁଥିବା ସମୟରେ ହଠାତ୍ ସେଠାରେ ମଧୁ, କୈଟଭ ନାମକ ଦୁଇଜଣ ଅସୁର ଉପସ୍ଥିତ ହୋଇ କହିଲେ—"ତୁମେ କିଏ ସେ ? କାହିଁକି ଏହି ପଦ୍ମ ଉପରେ ବସିଛ ? ତୁମର କାମ କଅଣ ?"

ଏହା ଶୁଣି ବ୍ରହ୍ମାଙ୍କ ମନରେ ଭୟ ଜାତ ହେଲା ଏବଂ ସେ ଅସୁର ଦୁହିଙ୍କୁ ମନେ ମନେ ଖୁବ୍ ଭୟ କରିଗଲେ ।

ଏହା ଶୁଣି ଶୌନକ ପଚାରିଲେ—"ସୂତ ମହୋଦୟ, ପ୍ରଳୟ କାଳରେ ସମସ୍ତେ ଧ୍ୱଂସ ହୋଇ ଯାଉଥିବା ସମୟରେ, ଏ ଅସୁର ଦୁହେଁ ଆସିଲେ କେଉଁଠୁ ?"

ସୂତ କହିଲେ—"ମୁନିଗଣ, ଭଗବାନଙ୍କ ଲୀଳା ଅସୀମ । ତାଙ୍କ ଅନୁଗ୍ରହରୁ କେତେକ ପ୍ରାଣୀ ସୃଷ୍ଟି ହୋଇଥାନ୍ତି । ସେମାନେ ପ୍ରଳୟକାଳରେ ମଧ୍ୟ ରହିପାରନ୍ତି । ସେମାନଙ୍କ ମଧ୍ୟରୁ କେତେକ ତମୋଗୁଣସମ୍ପନ୍ନ ଏବଂ ଆଉ କେତେକ ସତ୍ତ୍ୱଗୁଣସମ୍ପନ୍ନ । ସତ୍ତ୍ୱଗୁଣଶାଳୀ ମାର୍କଣ୍ଡେୟ ଓ ଲୋମଶ ପ୍ରଭୃତି ପ୍ରଳୟ କାଳରେ ମଧ୍ୟ ନିଜନିଜର ଅସ୍ତିତ୍ୱ ରକ୍ଷା କରିପାରନ୍ତି; କିନ୍ତୁ ମଧୁକୈଟଭ ଥିଲେ ତମୋଗୁଣସମ୍ପନ୍ନ । ତେଣୁ ସେ ଅନାୟାସରେ ବ୍ରହ୍ମାଙ୍କୁ ଭୟଭୀତ କରାଇ ପାରିଲେ । ବ୍ରହ୍ମାଙ୍କ ଅବସ୍ଥା ଲକ୍ଷ୍ୟ କରି କହିଲେ ବିଷ୍ଣୁ—"ତୁମେ ଏହି କମଳ-ନାଳରେ ପ୍ରବେଶ କରିଯାଅ । ସେହିଠାରେ ମୋର ଦର୍ଶନ ପାଇବ ।"

"ଆକାଶବାଣୀ ଅନୁସାରେ ବ୍ରହ୍ମା କମଳ ନାଳ ମଧ୍ୟରେ ପ୍ରବେଶ କଲେ । ଅସୁର ଦୁହେଁ ବ୍ରହ୍ମାଙ୍କୁ ନ ଦେଖି ସ୍ୱୟଂ ଅନାଦିନାଥ ବିଷ୍ଣୁଙ୍କୁ ଯୁଦ୍ଧ କରିବା ପାଇଁ ଆହ୍ୱାନ କଲେ । ବିଷ୍ଣୁ ବାଧ୍ୟହୋଇ ଅସୁର ଦୁହିଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ ଲାଗି ରହିଲା; କିନ୍ତୁ ବିଷ୍ଣୁ ସେ ଦୁହିଙ୍କୁ ହରାଇ ପାରିଲେ ନାହିଁ ।"

ଏହା ମଧ୍ୟରେ ବ୍ରହ୍ମା ପୁଣି ଆସି କମଳ ଉପରେ ବସି ପଡ଼ିଲେ । ଅସୁର ଦୁହେଁ ପୁଣି ବ୍ରହ୍ମାଙ୍କୁ ଭୟଭୀତ କରାଇଲେ । ତା'ପରେ ବିଷ୍ଣୁ ପୁଣି ଅସୁର ଦୁହିଙ୍କ ସହିତ ଦ୍ୱିତୀୟଥର ଯୁଦ୍ଧ ଆରମ୍ଭ କଲେ । ତଥାପି ଅସୁର ଦୁହେଁ ପରାସ୍ତ ହେଲେନାହିଁ । ତେଣୁ ବିଷ୍ଣୁ ଛଳ କପଟରେ ଅସୁରଙ୍କ ବିନାଶ ନିମିତ୍ତ ପ୍ରସ୍ତୁତ ହୋଇ କହିଲେ—"ଦୈତ୍ୟବର ମୁଁ ତୁମ ଦୁହିଙ୍କ ବଳବୀର୍ଯ୍ୟରେ ଅଭିଭୂତ ହୋଇଛି । ତୁମେ ଦୁହେଁ ମୋ'ଠାରୁ କିଛି ବର ପ୍ରାର୍ଥନା କର ।"

ଅସୁର ଦୁହେଁ ସଗର୍ବରେ କହିଲେ—"ଆମେ ତୁମଠାରୁ ପରାସ୍ତ ହୋଇନାହୁଁ । ତେଣୁ ତୁମ ଆଗରେ ଆମେ ବର ପାର୍ଥନା କରିବୁ କାହିଁକି ? ତୁମେ ଯୁଦ୍ଧରେ ପରାସ୍ତ ହୋଇଛ; ବରଂ ତୁମେ ଆମ ପାଖରୁ କିଛି ବର ପାଇବା ପାଇଁ ପ୍ରାର୍ଥନା କର ତୁମେ ଯାହା ବାଞ୍ଛା କରିବ, ଆମେ ତୁମର ଅଭିଳାଷ ପୂରଣ କରିବୁ ।"

ବିଷ୍ଣୁ ତାହାହିଁ ଚାହୁଁଥିଲେ । ସେ ତତ୍‌କ୍ଷଣାତ୍ କହିଲେ—"ମୁଁ ତୁମ ଦୁହିଙ୍କୁ ସଂହାର କରେ, ଏହି ବର ମୋତେ ପ୍ରଦାନ କର ।"

ଅସୁର ଦୁହେଁ ଏହା ଶୁଣି ହତବାକ୍ ହୋଇଗଲେ । ସେ ଦୁହେଁ ମନେ ମନେ ଭାବିଲେ—'ଆରେ···ଏ'ତ ଆମକୁ କପଟ କରି ଠକାଇ ଦେଲା ! ଠିକ୍ ଅଛି, ଆମେ ମଧ୍ୟ ତା'ଠାରୁ କିଛି ବର ମାଗିବା ।'

ବିଷ୍ଣୁ ସେ ଦୁହିଙ୍କ ପ୍ରାର୍ଥନା ସ୍ୱୀକାର କରନ୍ତେ, ସେ ଦୁହେଁ କହିଲେ—"ତୁମେ ଆମକୁ ମାରିବା ପରେ, ଆମେ ପୁଣି ତୁମ ସନ୍ତାନ ହୋଇ ଜନ୍ମ ଗ୍ରହଣ କରିବୁ; ଆମକୁ ଏହି ବର ପ୍ରଦାନ କର ।"

ଭଗବାନ୍ ଅସୁର ଦୁହିଙ୍କ ମନୋବାଞ୍ଛା ପୂରଣ କରିବାକୁ ସ୍ୱୀକୃତ ପ୍ରଦାନ କଲେ । ଭଗବାନ୍ ମଧୁ କୈଟଭଙ୍କୁ ମାରି ସେ ଦୁହିଙ୍କ ମେଦରେ ମେଦନୀ ସୃଷ୍ଟି କଲେ । ସେ ଦୁହେଁ ପରବର୍ତ୍ତୀ କଳ୍ପରେ ଅଧର୍ମ ଓ ଅସତ୍ୟ ନାମରେ ଜନ୍ମ ଗ୍ରହଣ କଲେ । ଏହି କଳ୍ପରେ ସେ ଦୁହେଁ ପ୍ରଜାପତି ବ୍ରହ୍ମାଙ୍କ ପୃଷ୍ଠଭାଗ ଓ ପାୟୁରୁ ଜାତ ହୋଇ ବଂଶ ବୃଦ୍ଧି କରିଛନ୍ତି ।"

ମୈତ୍ରେୟ ବିଦୁରଙ୍କୁ ଉପଦେଶ ଛଳରେ କହିଲେ—"ହେ ବିଦୁର, ମୁଁ ଆପଣ-ମାନଙ୍କୁ ଅଧର୍ମବଂଶ ସମ୍ବନ୍ଧରେ ସଂକ୍ଷେପରେ ଶୁଣାଇଲି । ଏହା ପରେ ଆଉ ଯଦି କିଛି ଆପଣଙ୍କ ମନରେ ସନ୍ଦେହ ଅଛି, ତାହା ପ୍ରକାଶ କରନ୍ତୁ ।"

ନୈମିଷାରଣ୍ୟରେ ସୂତ ମହର୍ଷି ଶୌନକାଦି ମୁନିମାନଙ୍କୁ କହିଲେ—"ହେ ବେଦଜ୍ଞ ମୁନିଗଣ, ବିଦୁର ମୈତ୍ରେୟଙ୍କଠାରୁ ଅଧର୍ମବଂଶ ସମ୍ବନ୍ଧରେ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ।"

## ଛପ୍ପୟ

"କଲି ଦୁରୁକ୍ତି ନେ ଜନେ ମୃତ୍ୟୁ ଭୟ ଦୋନୋଂ ବାଲକ ।
ଦୁଲ୍ହା ଦୁଲହିନ ବନେ କ୍ରୂର ସବ ଜଗକେ ଘାଲକ ॥
ତିନ ଦୋଉନ ତେଂ ନରକ ଯାତନା ଭଯେ ମୂଢ଼ ମତି ।
ପାପନ କୋ ଦୁଃଖ ବେଗ କରତେଂ ଦେହିଂ ଦୁଃଖ ଅତି ॥
ଜୋ ଅଧର୍ମ କେ ବଂଶ କୂଁ, ସୁୟଂ ପଢ଼େଂ ସବତେ କହେଂ ।
ତିନକେ ମନ କୀ ମଲିନତା, ମିଟୈ ଅନ୍ତ ସୁରପୁର ଲହେଂ ॥"

ସମାପ୍ତ

---

ମୁଦ୍ରାକର—ପୂର୍ଣ୍ଣଚନ୍ଦ୍ର ପଣ୍ଡା, ନବରତ୍ନ ପ୍ରେସ, କଟକ—୯

# ବିଜ୍ଞପ୍ତି

ପରିବ୍ରାଜକ ସନ୍ଥ ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ଲେଖନୀ ନିସୃତ ହିନ୍ଦି
ଭାଗବତ କଥାର ଓଡ଼ିଆ ଅନୁବାଦ—ପ୍ରଥମ ସଂସ୍କରଣ—ପ୍ରକାଶିତ

| | | |
|---|---|---|
| ଭାଗବତ କଥା | ପ୍ରଥମ ଖଣ୍ଡ | ଟ ୧୦ ଙ୍କା |
| ଭାଗବତ କଥା | ଦ୍ୱିତୀୟ ଖଣ୍ଡ | ଟ ୧୦ ଙ୍କା |
| ଭାଗବତ କଥା | ତୃତୀୟ ଖଣ୍ଡ | ଟ ୧୨ ଙ୍କା |
| ଭାଗବତ କଥା | ଚତୁର୍ଥ ଖଣ୍ଡ | ଟ ୧୨ ଙ୍କା |
| ଭାଗବତ କଥା | ପଞ୍ଚମ ଖଣ୍ଡ | ଟ ୧୫ ଙ୍କା |
| ଭାଗବତ କଥା | ଷଷ୍ଠ ଖଣ୍ଡ | ଟ ୧୫ ଙ୍କା |
| ଭାଗବତ କଥା | ସପ୍ତମ ଖଣ୍ଡ | ଟ ୧୫ ଙ୍କା |
| ଭାଗବତ କଥା | ଅଷ୍ଟମ ଖଣ୍ଡ | ଟ ୧୫ ଙ୍କା |
| ଭାଗବତ କଥା | ନବମ ଖଣ୍ଡ | ଟ ୧୫ ଙ୍କା |
| ଭାଗବତ କଥା | ଦଶମ ଖଣ୍ଡ | ଟ ୧୫ ଙ୍କା |

ଅବଶିଷ୍ଟ ପଚିଶ ଖଣ୍ଡ ଭାଗବତ କଥା କ୍ରମେ ପ୍ରକାଶିତ ହେଉଛି ।

ସେବକ

**ଅନନ୍ତ ମିଶ୍ର**